


( ଦ୍ୱିତୀୟ ଖଣ୍ଡ  ଲଘୁସଙ୍ଗୀତ ବିଭାଗ )

କବିଚନ୍ଦ୍ର

**କାଳୀଚରଣ ପଟ୍ଟନାୟକ**

ନାଟ୍ୟାଚାର୍ଯ୍ୟ

ପ୍ରକାଶକ :
ଇଉନାଇଟେଡ୍ ବୁକ୍ ହାଉସ୍
ବାଲୁବଜାର
କଟକ-୨

ପ୍ରଚ୍ଛଦପଟ :
ଶ୍ରୀ ଅସୀତ୍ ମୁଖାର୍ଜୀ
ଶିଳ୍ପରୂପମ୍
କଟକ-୨

ମୁଦ୍ରାକର :
ଶ୍ରୀ ଗୋପାଳ ପ୍ରେସ୍
କଟକ-୨

ପ୍ରଥମମୁଦ୍ରଣ :
୧୯୭୩

ଟ ୨୫.୦୦
ବନ୍ଧାଇ-ଅତିରିକ୍ତ ଏକଟଙ୍କା

# ଉତ୍ସର୍ଗ

ଏଥିରୁ ଅନେକ ଗୀତ ସ୍ଥାନ, କାଳ, ପାତ୍ର, ଅବସ୍ଥା ଓ କ୍ଷେତ୍ରକୁ ମନାଇଁ
ଲେଖା । ସେଗୁଡ଼ିକ ପଢ଼ିଲେ ଅବା ଗାଇଲେ, ସେଇ
ମନପାଖୋର କଥା—ଦିନର ସପନ ପରି ହୋଇ
ପଡ଼େ—ପୁଣି ପଛ ଫେରି ହୋଇ, ଯାହାର
ଭୁଲ-ଚୁକ ଭିତରେ ଏକ ଅକୁହା,ଅଫୁଟା
ଚହଲ ପକାଇଦେଇ ପାରିବ;—
ତାହାର ହାତରେ ସଅଁପି
ଦେଉଛି ଗୀତାବଳୀର
ଏଇ ବିଭାଗଟି ।

—କାଳୀଚରଣ—

## ଟିକିଏ ଶୁଣନ୍ତୁ

'କ୍ଷୁଦ୍ର ଗୀତ' ବୋଲି ସଂଗୀତ ଶାସ୍ତ୍ରରେ ଗୋଟିଏ ବିଭାଗ ଅଛି । ଆଜି ଆମେ ଯାହାକୁ ଲଘୁ ସଂଗୀତ ବା ସୁଗମ ସଂଗୀତ କିମ୍ବା ଆଧୁନିକ ଗୀତ କହୁଛୁଁ, ସେ ସବୁ ଏଇ କ୍ଷୁଦ୍ର ଗୀତ ବିଭାଗର ଅନ୍ତର୍ଗତ କହିଲେ ନିହାତି ଅସଂଗତ ହେବନି ।

ଏ ବିଷୟର ଗୀତ ଗୁଡ଼ିକ ଉପରେ ରାଗ ନିର୍ଦ୍ଦେଶନା ନାହିଁ । ଦିଆଯାଇଛି କେବଳ ତାଳ, ଅର୍ଥାତ୍ ଛନ୍ଦର ଗତି ନିର୍ଦ୍ଦେଶ । ରସ-ସିଦ୍ଧି ବିନା ସଂଗୀତ ଗାୟନ ବୃଥା । ଏଥିପାଇଁ ଗୀତିକାରର ଯେପରି ଦାୟିତ୍ୱ ରହିଛି, ସ୍ୱରକାର ମଧ୍ୟ ସେହିପରି ଦାୟୀ ।

ଭାବକୁ ଗୁନ୍ଥେଁ ଭାଷା, ତା କୁ ବାନ୍ଧେଁ ସ୍ୱର — ତିନି କଥାଯାକ ଏକାଠି ନହେଲେ, ଶ୍ରୋତାର ମନୋରଞ୍ଜକ ହେବନାହିଁ, ସେ ଗୀତ ।

ମୋର ଅନୁଭୂତି ଓ ବିଶ୍ୱାସରେ ଗୀତିକାରଙ୍କର କିଛି ସ୍ୱର ଜ୍ଞାନ ଥିବା ଦରକାର । ନୋହିଲେ ତାଙ୍କ ଲେଖା ଗୀତ, ହୁଏତ ଗଦ୍ୟ, ଗଦ୍ୟ-କବିତା ବା କବିତା ହୋଇପାରେ; ମାତ୍ର ତାହା ସ୍ୱର, ତାଳ, ଛନ୍ଦ-ମାଧୁର୍ଯ୍ୟ ଭରା ସଂଗୀତ ରୂପେ ଅସ୍ଥାନ ଜମାଇ ପାରିବା କଠିନ ହେବ । ସ୍ୱରଦାତାଙ୍କ ପକ୍ଷେ ମଧ୍ୟ ସ୍ଥଳ ବିଶେଷରେ ଏପରି ରଚନାରେ ସ୍ୱର ଦେବା ସୁବିଧାଜନକ ନୁହେଁ । ପୁଣି ସ୍ୱରକାରଙ୍କର

ମଧ୍ୟ ଭାଷା ଓ ରସ ଜ୍ଞାନ ଥିବା ଆବଶ୍ୟକ । ତା ନ ହେଲେ ସେ ସ୍ଥାନ, କାଳ ଓ ରସର ନାମୀ ଯୋଗାଣିଆ ବୋଲାଇ ପାରିବେନାହିଁ । ସ୍ୱର ତାଳ ବନ୍ଧେ ଗୀତ ସଂଗୀତ ଅପେକ୍ଷା ଏଇଥିପାଇଁ ଆଧୁନିକ ଗୀତ ଲେଖାରେ ସ୍ୱରଦେବା କଠିନ ବୋଲି ମୋର ବିଶ୍ୱାସ ।

ମନେ ରଖିବାକୁ ହେବ ଯେ, ଗାୟକଠାରୁ ଶ୍ରୋତାର ଦାୟିତ୍ୱ ବେଶୀ । ଶହ୍ଲସ ଗରାଖ ନଥିଲେ ଗୁଣୀ ଗାୟକ ଗୀତ ପରସି ବଡ଼ ବ୍ୟଥା ପାଏ । ସେଇପରି ରସିକ ଗାୟକ ନହେଲେ ରସଜ୍ଞ ଶ୍ରୋତା ମଧ୍ୟ ସୁଖୀ ହୋଇପାରେ ନାହିଁ । ବୋଲିବାକୁ ହେବ ଯେ ଏହା ଆଦାନ-ପ୍ରଦାନ ସମ୍ବନ୍ଧ ।

ଗୀତାବଳୀର ପ୍ରଥମ ଭାଗରେ ଯେପରି ଅଠେଇଶ ଓଡ଼ିଶୀ ଗୀତ ଛପା ହୋଇଛି, ଏ ଭାଗରେ ମଧ୍ୟ ସେଇ ସଂଖ୍ୟା ବଜାୟ ରଖି ଅଠେଇଶ ଲଘୁସଂଗୀତ ବା ଆଧୁନିକ ସଂଗୀତ ପ୍ରକାଶିତ ହେଲା ।

ପରବର୍ତ୍ତୀ ଖଣ୍ଡମାନଙ୍କରେ ଭଜନ, ଜଣାଣ, ପଲ୍ଲୀସ୍ୱର ଗୀତ ଓ କୀର୍ତ୍ତନ ଇତ୍ୟାଦି କ୍ରମେ ପ୍ରକାଶିତ ହେବ ।

ଏହା ବାଦ୍, ବାକି ସମସ୍ତ ବିଭାଗୀୟ ଗୀତଗୁଡ଼ିକ 'ଉପୁନିକା' ନାମରେ ପ୍ରକାଶ କରିବାକୁ ମୋର ବନ୍ଧୁ ପ୍ରକାଶକଙ୍କର ବାସନା ।

ଓଡ଼ିଶୀ ବିଭାଗର ଗୀତ ଗୁଡ଼ିକ ପରି ନାନାସ୍ଥାନରୁ ଢୁଣ୍ଡାଇ ଏ ଗୀତ ଗୁଡ଼ିକ ମଧ୍ୟ ଠୁଳ କରିଛନ୍ତି ସ୍ନେହାସ୍ପଦ ଶ୍ରୀମାନ୍ ନରେନ୍ଦ୍ର ମହାପାତ୍ର । ତାଙ୍କ ଶ୍ରମ ବାସ୍ତବରେ ମୋର ଅପାସୋରା ।

ବାକି ଗୋଟିଏ କଥା ନ କହିଲେ ଚଳୁନାହିଁ । ମୋ ପରି ଏକ ଅଳସୁଆକୁ ମୋର ପ୍ରକାଶକ ବନ୍ଧୁ ଗୋକୁଳ କରରେ ମୁଣ୍ଡ ଫୁଲ

ତାଡ଼ନା ଦେଇ ନଥିଲେ, ଗୀତାବଳୀ ଛପା ନ ହୋଇ କୁଆଡ଼େ ଦେହଛପା ଦେଇ ରହିଥାଆନ୍ତା ।

ତାଙ୍କୁ ଏଥିପାଇଁ ଧନ୍ୟବାଦ ଦେବ କି ସାଧୁବାଦ ଦେବ, ଠିକଣା କରିପାରୁନାହିଁ – ହେଲେ, କୃତଜ୍ଞ ରହିଲି, ଏକଥା ନିଶ୍ଚିତ ।

ଜଗନ୍ନାଥ ବଲ୍ଲଭ — **କାଳୀଚରଣ** –

କଟକ-୧ ୨୨ । ୧୧ । ୬୩

# କବିଚନ୍ଦ୍ର ଗୀତାବଳୀ

( ତୃତୀୟ ଖଣ୍ଡ )

## ଭଜନ-ଜଣାଣ ବିଭାଗ

—ମୁକ୍ତି ପଥେ—

# ସୂଚୀ

| ଗୀତ | ପୃଷ୍ଠା |
|---|---|

| ଗୀତ | ପୃଷ୍ଠା |
|---|---|
| ୧୯ । ପ୍ରିୟ ଗୋ ସେହି ଗୀତ | ୧୬ |
| ୨୦ । ନମାନ ନବାଠ ଖରା— | ୧୭ |
| ୨୧ । ବନ୍ଧୁ, ସତେ ଏ ମିଳନ | ୧୮ |
| ୨୨ । ମୁଁ ଗୋ ବନ୍ଧୁ ହେଲେ କି ହେବ | ୧୯ |
| ୨୩ । ସପନପୁରୀର ରାଜ କୁମାରୀ | ୨୦ |
| ୨୪ । ସପନ ଗୋ ! ନିତି ତୋହର ପାଇଁକି | ୨୧ |
| ୨୫ । ଶୁଖା ନା ଲୋ ଶିରୀମୁଖ | ୨୨ |
| ୨୬ । ମୁଁ ସେ ବାରିଧାର ଛନ୍ଦ | ୨୩ |
| ୨୭ । ବରଷା ଝରା ରାତିରେ | ୨୪ |
| ୨୮ । କଥା ମୁଁ କହିବି ନାହିଁ | ୨୫ |
| ୨୯ । ଜୋଛନା ଝରା | ୨୫ |
| ୩୦ । କିଏ କହୁଥିଲା | ୨୬ |
| ୩୧ । କୁଆଁରୀ ଜହ୍ନର ଗରବ | ୨୭ |
| ୩୨ । ବନ ଭୃଙ୍ଗରେ | ୨୮ |
| ୩୩ । ଶତଦଳ ଦଳା | ୨୮ |
| ୩୪ । ସେ ନୂତନ ରଙ୍ଗ ଭରା | ୨୯ |
| ୩୫ । ନେବ ନାହିଁ କିଛି | ୩୦ |
| ୩୬ । ଯେବେ ଚନ୍ଦ୍ର ଦେଲା ହସି | ୩୦ |
| ୩୭ । କହନା ବନ୍ଧୁ | ୩୧ |
| ୩୮ । ନେଇ ଯା ନେଲେ ଗୋ | ୩୨ |
| ୩୯ । ଭୁଲି ତୋ ବାଟ କରେ | ୩୩ |
| ୪୦ । ଜାଣେ ରେ, ଜାଣେ | ୩୪ |

| ଗୀତ | ପୃଷ୍ଠା |
|---|---|

| ଗୀତ | ପୃଷ୍ଠା |
|---|---|

| ଗୀତ | ପୃଷ୍ଠା |
| --- | --- |

| ଗୀତ | ପୃଷ୍ଠା |
|---|---|

| ଗୀତ | ପୃଷ୍ଠା |
| --- | --- |




# ଲଘୁ ସଂଗୀତ

( ଆଧୁନିକ )

(୧)

—ଦାଦରା—

ଏଇ ସେ—ଚନ୍ଦ୍ର ସେଦିନ ଥିଲା ଗୋ ଚୁହିଁ
ଏଇ ସେ ଗନ୍ଧ,—ମଳୟ ଆଣିଲା ବହି । ୦ ।
ମନ ଦିଆ ନିଆ ସରିଛି ସେଦିନ, ମଜନ ଆଖିର ତଳେ,
ମୂକ ସାକ୍ଷୀ ତା'ର ଆକାଶର ତାରା, ଚୁହିଁଥିଲା କୁତୂହଳେ,
ମନେ କି ପଡ଼ୁନା ପ୍ରିୟ !
ଦେହ ଛୁଇଁ ସତ କହ,
ତନୁ-ଲତା ମୋର ଅଙ୍କରେ ହସି ଧରିଥିଲ ଆଉଜାଇ
କାନ କୁହାଇଛଲେ କି କଲ, ଭାବିଲ, ଦୂର ଶଶୀ ଦରଶାଇ ।୧।
ପାସୋରି ଦେଲ କି ସତେ,
ପର ପରି କରି ମୋତେ ?
ଦୂରେ ଥାଅ ପଛେ ପରାଣର ସାଥି ! ସେଥିକି ଶୋଚନା ନାହିଁ
ସପନ ମନ୍ଦିରେ ଆସ ଥରେ ଥରେ, ଦେଖିବି ସେ ପଲକ ପାଇଁ ।୨।

(୨)

—ଦ୍ରୁତ—ଏକତାଳୀ—

ବଉଳ ଗହଳ ତଳେ
ଶଶୀ ଯେବେ ହସି ତଳେ
କହିଥିଲ ପରା ପ୍ରିୟ—ଆସିବ ସେତିକି ବେଳେ ? ।୦।

ପଲକର ଅପରାଧ
ସାଧି ବସିଲ କି ବାଦ,
ପୂରି ନାହିଁ ମନ ସାଧ ଆତୁର କି ଏବେ ହେଲେ ? ।୧।

ମାନ ନାହିଁ କଥା ଜାଣି ଜାଣି ବୋଲି ମୁହିଁ
ତୁମେ କି ପ୍ରିୟ ଗୋ, ନ ପାରିବ ଫେରି ଚାହିଁ,
ଲୁଚେ ଶଶୀ, ଲୁଚେ ତାରା
ଆସେ ଯେବେ ଘନ ଖରା
ହସେ ପୁଣି ସଞ୍ଜେ ପରା—ତାହା କି ନାହିଁ ମୋ ସ୍ମଲେ ? ।୨।

ଏ ଜୀବନେ ଯେବେ ନ ଚାହିଁବ ଆଉ ଫେରି,
ସଞ୍ଜ ଆସିବ ଯେବେ ଚାନ୍ଦ କୋଳେ ଧରି
ଅବହେଳା କରି ପ୍ରିୟ !
ଏଇ ପଥେ ଚାହିଁ ଯାଅ
ଚେଇଁଥିବ ଫୁଲ ଶେଯ, ସଜଡ଼ା ବଉଳ ଦଳେ ।୩।

---

## (୩)

—ଦାଦରା—

ସରିଲା ଗୋ ଯେବେ ନିଶି
ଶଶୀ ହେଲା ପରବାସୀ
ରଙ୍ଗ ଅଧରେ, ପରିହାସି ମୋରେ
ଅରୁଣ ଚାହିଁଲା ହସି ।୦।

ମଳିନ ମଳିନ ଦିଶି ଆସୁଥିଲା ନିଶିର ପ୍ରଦୀପ ଶିଖା,
ମଉଳି ମଉଳି ଆସୁଥିଲା ଯେମନ୍ତେ ସୁଖର ସ୍ୱପନ ରେଖା,
ଲାଜୁଆ ନୟନ ତଳେ
ପଥ ଚାଲିବାର ବେଳେ
ମନେଅଛି ମୋର ଅଣାପୂର୍ତ୍ତ ବାସ ପଡ଼ୁଥିଲା ଖସି ଖସି ।୧।

କାହିଁକି ମୋତେ ଗୋ ଜଗାଇ ନଦେଲ ପ୍ରିୟ
ଜାଣି ଥାଉଁ କପାଁ ବଦାୟ ମୋତେ ନଦିଅ
ଲୋକହସା କି ଗୋ, ଏତେ ସୁଖପାଅ
ଆଖି ଟିପି ଟିପି ଦୂରେ ହସୁଥାଅ
ଯାବେ ପାଦ ମୋର ଛନ୍ଦ ହେଲେ କି
ତୁମେ ହେଉଥାଅ ଖୁସି ? ।୨।

---

(୪)

— ଚତୁର୍ମାତ୍ରିକ ଛନ୍ଦ —

ଝୁମ୍ ଝୁମ୍ ନୂପୁର ବାଜେ,
ଅମାନିଆଁ ଚରଣେ ଗୋ !
ମାନେ ନାହିଁ ମନା ସଖୀ,
ମରେଁ, ମରେଁ ମରେଁ ଲୋକ ଲାଜେ । ୦ ।

ଯେତେ ମୁଁ ସଜାଡ଼େ ବସି ଭଙ୍ଗା ମନ ମୋର
ଗୁଇପତ୍ର ଦେଖାଦିଏ ଲୁଚି ମନ ଚୋର,
ସୁମନ ଦଳରେ ସଖି !
ବାସପତ୍ର ଥାଏ ଲାଖି
ଅଭିସାରେ ଯାଏଁ ନିତି,
ମୋତେ ଗୋ ମୁଁ ଖୋଜେ । ୧ ।

ଜାଣେନା ଗୋ, ନିତି କେବେ ଆସି ଯାଏ ଚାଲି
ଆଖିରେ ମିଶାଇ ଆଖି ଗୁହିଁ ରହେ ଖାଲି,
ମୋହନ ପଦ ନୂପୁର
ସପନ ଭାଙ୍ଗଇ ମୋର
ଫେରିବା ବେଳକୁ ବେଳେ
ବୁକେ ଛାଇ ହଜେ । ୨ ।

———

(୫)

—ଚତୁର୍ମାସିକ ଛନ୍ଦ—

ଆଣ ନାହିଁ ପ୍ରିୟ, ମୋର ସେ ମିଳନେ
ଆସ ନାହିଁ ଯେବେ ମଧୁ-ମାସ ଦିନେ
ଥିଲା ଯେବେ ଭଙ୍ଗ-ମଧୁ ଚନ୍ଦ୍ର ସାଥେ ମଧୁ ଗନ୍ଧମୟ ଲଗନେ ।୦।

ସାଜ ସାଜ ଶେଯ ସୁପାନ୍ତ
ଗୁହିଁ ଗୁହିଁ ପାହିଛି ରାତ,
ଉଷା ହସି ହସି ଗଲା ପରିହାସି ଝରିଲ ସରମେ ॥ ।୧।

ନାହିଁ ଫୁଲେ ସେ କଶି ବାସ
ନାହିଁ ଶେଜେ ସେ ଶଶୀ ହାସ
ଝାସୋଛି ବଇଁଶୀ, କାନେ କାନେ ପଶି ଘାରେ ତ ମରମେ । ।୨।

———

(୬)

—ଖେମଟା—

ସେ କି ଅପରାଧ ମୋର ?
ଅଦୋଷରେ ତେବେ ଦୋଷ ମାଗିନଏଁ କରଯୋଡ଼ି ପାଶେ ତୋର ।୦।

ଶରୀରେ ଶୀତ ପରଶ
ଭରିଦେଲା ମନେ ଆଶ
ସେଇ କି ମୋ ଅପରାଧ—ମୁଖ ଟେକି ଗୁହିଁବାର,

ଯେବେ ବସନ୍ତ ପବନ ଛୁଇଁ ଅପଘନ,
ଅଜଣାରେ ଗଲା ଖୋଲି
ମେଲା ଆଖି ମୋର ମୁଗ୍ଧ, ଦେଇଗଲା
ଭରି ଦୁର ସନ୍ତୁ ବୋଲି,
ଶିହରଣ ଜାଗି ଅମାନିଆ ବୁକୁ ଥରଗଲା ବାର ବାର
ସେ କି ଅପରାଧ ମୋର ? । ୧ ।

( ଯେବେ )ସୁମନରେ ବାର ମଧୁ ସଞ୍ଚରଭ
ଅଳି ଆସି କାହୁଁ ରଚଲା ପରବ,
ରୁଷି ଦୋଷିଲୁ ତୁ ଅଳି ଗୁଣ୍ଜରବ ଏତକ ମୋ କହିବାର,
ସୁନ୍ଦର ପଣର କରନ୍ତୁ ଆଦର
ଧରମ ସେ ପରା ଆଖିର, ମନର
କିଏ ଦେଲା ତୋତେ ଏ ରୂପ ବଇଭବ ଅପାସୋରା ଜୀବନର
ସେ କି ଅପରାଧ ମୋର ? । ୨ ।

---

(୭)

—ଦାଦରା—

ପ୍ରିୟ ଗୋ, ପ୍ରିୟ ଗୋ, ପ୍ରିୟ ଗୋ,
ସଞ୍ଚିତ ମୋର ସେଇ ନଶି ଅଭିସାର
ବାଞ୍ଛିତ ଯେତେ ଆଶା ଯେନ ଜୀବନର
ସବୁ ମୋତେ ଦିଅ ପ୍ରିୟ !
ଅସାର ଆଶା ନ ଦିଅ

ନେବ କି ନାହିଁ ଗୋ କର ଖୁନ୍ଥା ଦ୍ୱାର
କହ କହ ମନ ଚୋର ?
ଶବଦ ହବ୍ ସେ ମୀରବ ଭାଷା କି ନ ଶୁଣିବ କାନ ମୋର ? । ୧ ।

ଶରତର ଏଇ ଭକ୍ତ ଗୃନ୍ଧ ହସ
ଅଳସ ନଶୀଥେ ଢାଏ ଗୋ ପରଶ,
ତାରା ଆଖି ତଳେ
ତୁମ ଦୀପ ଜଳେ,
ସାରା ନଶି ଜାଗି ଚାହିଁ ପଥ ଭୁଲେ
ଉପହାର ଦେବ ଗୋଟିଏ ଫୁଲ ମାତର—
ଏତିକ ଆଶା କି ହେବ ମୋର ପାଣି ଗାର ?।୨ ।

---

(୮)

ଦ୍ରୁତ—ଏକତାଲୀ

ଜାଗ ମଧୁକର ଜାଗ ଜାଗ ଜାଗ
ଚରାଚର ସମୀରଣ, କୁସୁମ କୁମାରୀ ରେ
ପରଶେ ନବ ଅନୁରାଗ—ଜାଗ—ଜାଗ । ୦ ॥

ସେ ଯେ ଯଉବନ ମଧୁ ବୁକେ ଭର
ଶେଯେ ଘୁମାଏଁ ନହଲେ ସୁକୁମାରୀ
ଭେଟ ଅଭିମାନମାରେ ବଟ ଆଗ ଜାଗ, ଜାଗ । ୧ ।

ଯେବେ ମେଲବ କୁମାରୀ ନିଦ ଆଖି,
ଭୁ ରେ ପଲକେ ପଲକେ ଯିବୁ ଲଖି,
ପାଖୁଡ଼ା ଉଢ଼ଣା ଠେଲି
ଗାଇବୁ କଣ୍ଠ ମେଲି,
ଦରଶାଇ କପଟ ସୋହାଗ — ଜାଗ, ଜାଗ । ୨ ।
ଲୁଟି ମଧୁ, ଭେଙ୍ଗି ବନ୍ଧ —ଲୁଚି ଲୁଚି ଯା ଯା' ଦୂରୁ,
ଝୁରି ମରୁ ନରମାଳୀ, ତୋର ସଙ୍ଗ
ଏ ତ ଜୀବନର ତୋର ନିତି ରଙ୍ଗ — ଜାଗ, ଜାଗ ।୩।

---

(୯)

— ଚତୁର୍ମାତ୍ରିକ ଛନ୍ଦ —

(ଯେବେ) ଉଷା ବଉଦର କାନି ଟାଣି —
ଶରତ ଚନ୍ଦ୍ରମା ଯାଏ ଝରି
ଚୁମିବ ଗୋ ତନୁ ଥିରି ଥିରି, କୁମୁଦମା ନାଚ ଅଛି ଥିରି ॥୦॥
ଯତିକର ସେ ଗୋ ଅନୁରାଗ
ସ୍ମୃତି ସ୍ମୃତି ମିଶା ରଙ୍ଗ ରାଗ
ଅଳପକ ମଣି କଳପକ
(ଭୁଦେ) ପରଭାତେ ଯିବୁ ଝୁରି ଝୁରି ।୧।
ପଲକର ମନ ଭୁଲା ହସ
ପୁଲକେ ନରେଖି, ଢାଳି ରସ
ଭଅଁ ସରେ ପୁଣି ତା ଆଶାରେ,
ମରୁ ଆଖି ଲୁହ ଭରି ଭରି ।୨।

---

(୧୦)

—ଦାଦରା—

ଆଗତ ଗୋ ! ତୁମ ଅଭୁଲା ପୋଥିରେ ଲେଖ
ବିଗତରେ ମୋର, ମନ କଥା, ମନେ ରଖ । ● ।
ଏଇ ଧୂଳି ଧରା ତଳେ, ଏଇ ଫୁଲ ଝରାବେଳେ
ଅଳପ ଆଲୁଅ ଛାୟା, ଦେଲା ସେ ଯେ ରୂପରେଖ ।
ଆଜ ତରୁ ତଳେ ନାହିଁ ନ ମିଳୁ ଗୋ ଠାଇ,
ଆଜର କୋଇଲି ନ ଯାଉ ମୋ ଗୀତ ଗାଇ,
ଆଜ ଲାଗି ମୋର ନାହିଁ ଅବସର, ଛୁଇଁବ ମଳୟ ପାଖ
ଉଷା-ହସା ଘରେ, ଶେଯ ପାରି ଯାଏ ଆଶାର ଆଶା ମୟୂଖ,
ମରି, ମରିବାର ପାଇଁ
ଜୀଇ, ଜୀଇନାହିଁ ମୁହିଁ
ଶତକର—କର ତଳେ, ମରା-ଜୀବ ଥିବ ଚେଇଁ
ଆଜର ସପନ ଯାହା, ସତ ହେବ ଲେଖି ରଖ ।

---

(୧୧)

—ଦାଦରା—

ଇନ୍ଦ୍ରଧନୁରେ ! ସୁଖ ପାଏ ତୋତେ ମୁହିଁ
ହସି ଥରେ, ପୁଣି ଲୁଚୁ, ଥରେ ବୋଲି ଭୁହି । । ● ।

ଏଇ, ସାତ ରଙ୍ଗୀ ନବରଙ୍ଗ
ଏଇ, ଚୋର ଶୁଆ ଚାଆଁ ଢଙ୍ଗ
ବିରହ ମିଳନ ମିଶା ମିଶି, ଏଇ ଜୀବନର ଧୂପଛାଇ । ୧ ।
ଶଶୀ ଯେବେ ଆସି
ନୀଳ ଜଳ ଦରପଣେ—
ଦେଖୁ ଥାଆନ୍ତା ଗୋ
ମୁଖ ତାର ଅନୁକ୍ଷଣେ,
ଠାବ କି ମିଳନ୍ତା କମଳ ହସିବା ପାଇଁ ? ୨ ।
ଛଟା ଧୂମଶିଖା, ନୂଆ ରେଖା ଲେଖା
ଭୁଲି ଗୀତ ଦିଏ ଗାଇ,
ଲକ୍ଷ ତଳେ ଜଣ, ଗନ୍ଧ ମଲ୍ଲୀ ଶୋଭା
ମନ ଲୋଭା ସିନା ସେହା । ୩ ।



(୧୨)

—ଦ୍ୱାଦଶ—

ଯେବେ ଆସୁ ଶରତ, ସେ ତୋ ଭସା ହାସ ତ,
ଭରେ ଦିଗ ଦିଗନ୍ତ
ଦୂର ଶଶୀ ଆ'ରେ । ୦ ।
ଫେଇ ଦେଲୁ ଯା ଘନ ଉତ୍ତରୀ
ରସେ ରସିଲୁ ଝର ନାଗରୀ
ହଟା ଲଗାନା, ଫେରିବୁ ଯା'ନା
ନ ଯା'ରେ, ନ ଯା'ରେ, ନ ଯା'ରେ । ୧ ।

ତୁଇଁ ଗୁପତେ ଶିଉଳ ମୁଖ,
ଚେତକ ନଶିଶେଷ ଦେଲୁ ଦୁଃଖ
ମଲ୍ ସେ ଝୁର, ଆଜ ତୁ ଫେର
ନ ଯା'ରେ, ନ ଯା'ରେ ନ ଯା'ରେ ।୨।

କା'ର ଶୀରତ୍ତ ପସର ଲୁହ୍ନି
କାରେ ବରହ ଦହନେ ଦହ୍ନି,
ମୁଖ ଲୁଗ୍ନା—ଲୁଚ ତୁ ଯା'ନା—
ନଯା'ରେ, ନ ଯା'ରେ ନ ଯା'ରେ । ୩ ।

---

(୧୩)

—ଦାଦରା—

ମଣିଚକା ତୁ ଗୋ ! ଜୀବନର ମରୁ-ଝୁର
ଖୋଲ୍ ଆଖି ଆଗେ ସ୍ୱପନର ଖେଳଘର । ୦ ।

ନଦୀର ନିରାଟ ଖରା ତଳେ
ଝାଇଁମରା ତାତ୍ତ ବାଲି ମେଳେ,
ମାଛଆଜ ଯେବେ ରଙ୍ଗଖେଳେ ତୁ ଯେ,
ନାଚ ଉଠେ ସତେ ମନ ମୋର । ୧ ।

ମରଣ ଶେଯରେ ଜୀବନ ତୁ
ଆଶାହ୍ନୀ ଆଶାର ମରମ ତୁ,
ମାୟା ହରିଣୀର ଚପଳ ଚରଣେ
ନୂପୁର ଶବଦ ଶୁଭେ ତୋର । ୨ ।

ଜାଣେ ଗୋ, ନୋତ୍ରୁ ତୁ ଜଳଧାର
ଅସାର ଜୀବନେ ଆଶା ଗୀର
ସେଇ ତ ଅବୁଝା ସରଜନା ବନ୍ଧୁ !
ସେଥିପାଇଁ ତୋର ସମାଦର । ।୩।

---

(୧୪)

—ଦ୍ରୁତ ଏକତାଳୀ—

ମରୀଚିକା ତୁ ଗୋ, ସାଥୀ ତୋର ବାଲୁଚର
ଚପଳ ଚପଳ ଚଳେ ତୋକୁ ଧୂଳି ଘର ।୦।
ମରୁ ଥଳ ଶତଦଳ
ଆଶାର ଅସାର ଜଳ
ନିତି,—ସପନ ବନକ ମାଝି, ତୁଳିକାରେ ଦେଇ ଲେଖି
ଅଦେଖା ଛବିର ଗାର । ।୧।
ମାୟାବେଶୀ କାୟା ତୋର
ଜାଣେ ସତେ ସେ ତ ପର
ସତେ, ଭସା ବଉଦର ଖେଳ, ତଥାପି ଗୋ ଲାଗେ ଭଲ
ତଥାପି ସେ ସାଥୀ ମୋର ।୨।
ଜୀବନ ମରଣ-ବାଦ
ଯେତେ ହସ, ଯେତେ କାନ୍ଦ
ତୁ ଯେ, ପଥିକ ମନ ଭୁଲଣି, ମରୀଲତା ମୂଳେ ପାଣି—
ଢାଳିବାର କାରିଗର ।୩।

—୦—

(୧୫)

—ଦ୍ରୁତ ଏକତାଳୀ—

ଝିଲମିଲ ଝିଲମିଲ ଘନ ଘୁଇ ଜହ୍ନ ତଳେ
(ତୋର) ଚଞ୍ଚଳ ଅଞ୍ଚଳ ମଞ୍ଜୁ ଦୋଳେ । ୦ ।
ମନ ମଳୟ ଡ଼େ଼ର, ଝୁରି ପରଶ ତାର
ଘୁମ ନୟନ କୋଳେ, ଜାଗେ ଥରକୁ ଥର
ଦୂର ସପନ ସାଥୀ, ଲୁଚକାଳି କି ଖେଳେ ? । ୧ ।
କିଏ ଆଶା ନଉକା
ବସି ବାହୁଛି ଏକା
ରୂପ ଅଦେଖା ତାର, ଗୁମ୍ଫା ଅଭୁଲା ଗାର
ମାୟା ଭଉଁରୀ ଜଳେ । ୨ ।
ଡାକ କର ପସାରି
ସେ କି ଆସିବ ଫେରି
ଆଖି ଖଙ୍ଗିଲା ମୋହ, ସାକ୍ଷୀ ଦଫୋପି ଲୁହ
ଚିତା ବୁକୁଟି ଜାଳେ । ୩ ।

———

(୧୬)

—ଦ୍ରୁତ ଏକତାଳୀ—

ପକ୍ଷୀ-ବସା ଉଡ଼ା କାଳ—ବଇଶାଖୀ ବତାସୀ !
(ସତେ) ସୁଖପାଏ ତୋତେ ଖେରି
ନଷ୍ଟ ବନ୍ଧ-ବୁଡ଼ା, କୂଳ ହୁଡ଼ା ସେ ଯେ ଲହଡ଼ା
(ମୋର) ଜୀବର ଜୀବନ ସରି । ୦ ।

ମେଘ କୋଳ-ଛଡ଼ା ଉଲୁକା
(ସେ ମୋ) ବୁକୁ କର ଢଏ ହାଲୁକା
ଉଗ୍ର ଆଖି ଲୁବ୍ଧ ଝଁସ ପର । ୧ ।

ସ୍ୱଚ୍ଛା ଝରଣା ସେ ସୁଅଣ
(ମୋର) ସସ୍ୱଗ ଟିକଏ ନାହିଁ;
ଚଟା ଲାଗେ ନଭ ଗୃଢଙ୍ଗ,
ଆଖି, ଥକ୍କ ଘଡ଼େ ରୁହିଁ ରୁହିଁ,
ଘଣ୍ଟା ମୃଣ୍ଡ ଝଏଁ ଥିର ଥିର । ୨ ।

ବିରହ ନଥାଇ ମିଳନ
(ଅନ୍ତ)ସବୁ ଯେତେ ଖାଲି ଜ୍ୱଳନ
ଚେଣ୍ଢ୍ରୁ, ପ୍ରଳୟର ଝନ ଗରଜ
କଳା ଗ୍ଲୁଇ ଚଳେ ନଏଁ ବର । ୩ ।

---

(୧୭)

—ଦାଦରା—

ଯଦି, ମନେଥିଲ ପ୍ରିୟ ! ସଜଫୁଲ ଦଳିଦିଅ
ଯଦି, ଆଖି ଦେଖା ଲେଖା ମନଛନ୍ଦୁ ପୋଛିଦିଅ
(ତେବେ) ଜଳାଞ୍ଜନା ଆଉ ସଞ୍ଜି ସଳତା
ଅଧାରୁ ଲିଭାଇ ଦିଅ । ୦ ।
ଯେବେ ଆସିବ ବସନ୍ତ ଫେର
ଯେବେ ବାସିବ ମଳୟ;—ସ୍ନେହ

ଗହଳରେ କଜଳ ଟାକୁଆ ଖୋସି ଗୋ !
ରସାଳ ହସିବ ଯେବେ,
କୁହୁ ଶୁଣି ମୁଁ ଯେ ଉହୁ କହୁଥିବ
ତୁମେ ପରଦେଶୀ ହୁଅ । ୧ ।

ଝମ୍ଝୁମ ବରଷା ନିଶୁନ ରାତରେ
ଜଳାଦନ କୋଳେ ବସି,
ଖିଲ ଖିଲ ହସି ଚପଳା ଛଇଳା
ଆଖି ମାରେ ଯେବେ ରସି,
ନପଟ ନିଠୁର ହୁଆ ବେନ ତୁମେ
ଘରଭୁଲ ଦୂରେ ରହ,
ଫୁଲ ଶେଜ ପରେ ଶ୍ରାବଣର ଖେଳ
ଥରେ ଖାଲି ଦେଖି ଯାଅ । ୨ ।

---

(୧୮)

—ଦାଦରା—

ଥିର ଥିର ସମୀରେ, ଗିରିଝରଣା ତୀରେ
ଫୁଟି ଫୁଲଟି ଗୋପନେ,
ତା' ମନଟି ମାର, କା'ପରଶ ଝୁରି, କି କଥା କହେ ମଉନେ ।
ଚିପି ଚିପି ଧୂହେଁ ହସି ଏକଲା ତାରା
ଚୁପି ଚୁପି ଆସେ ସେ ଯେ ସଙ୍ଗ-ହରା
ଅନ୍ତର ସାରା ତାର ସୋହାଗ ଭରା
ମନ ହୁଆ ନିଆରେ ସେ ପାରୁଖା ପରା,
ରସାଏ, ଭସାଏ, ଶୟନେ, ସପନେ । ୧

ଶିର ଶିର ବହି କାହୁଁ ମେଦୁର ସମୀର
ଛୁଇଁ ଫୁଲ ତନୁ ହରି ସରମ ତାର
ଘରେ ପରଶିଲା ନେଇ ଗନ୍ଧ ସାର
ପର ଘରବୁଡ଼ା ବୋଲି ଜନମ ଯାର
କେଜାଣେ, କି ସୁଖ, ପାଏ ସେ ଜୀବନେ । ୨ ।

---

(୧୯)

— ଦାଦରା —

ପ୍ରିୟ ଗୋ,
ସେଇ ଗୀତ ଲେଖି ଦିଅ ଗୋ । ୦ ।
କହି ପାରି ତୁମେ କହନ୍ତି ସଭିଏଁ
ମନ କଥା ପାରି କହନ୍ତି କବିଏ
ଲେଖିଦିଅ ଦେଖି ତୁମେ
ଗନ୍ଧ ଯେବେ ଫୁଲ ଚୁମେ
ମନ ତଳେ ତାର କି କଥା ଗୁମରେ କହ
ଭାଷା ତାର ତୁମେ ଲେଖନୀରେ ରୂପ ଦିଅ । ୧ ।
ପୁଲୁକରେ ଯେବେ ରଙ୍ଗ ଦରହସା ମାରେ
କୁମୁଦିନୀ କସ ଭାବୁଥାଏ ସରସୀରେ
ମଧୁକର ମଧୁ କଣ୍ଠେ
କି କଥା ସେ ଫୁଟି ଉଠେ
କମଳିନୀ ଲାଜ-ଲଖା ଓଠ ତଳେ, କହ
ସେ କଥାଟି ତାର କହି ତୁମେ ଭାଷା ଦିଅ । ୨ ।

ଭାଷାରେ ତୁମର ବେଦନ ଦେବ ମୁଁ ସୁର,
ଆଶାରେ ସେଦନ, ନଥିବ ତନ୍ଦ୍ରା ଘୋର
ଚରଣ ତଳେ ତୁମର
ବସିବ କାନ ପସାର,
ଗନ୍ଧ ଜୁଡ଼ାରେ ମୋ, ସେଦନ କବ କୋ,
ଫୁଲ ଝଗ ଖୋସି ଦଅ;
ଆଜର ଏ ସ୍ୱାଭ ପ୍ରିୟ ଗୋ, ଏଥର ଫେରନଅ, ଫେରନଅ । ୩ ।

— — —

(୨୦)

—ଦାଦର—

ନ ମାନି ନିଷ୍ଠୁର ଶର —
କାହିଁ ଗନ୍ଧ, କାହିଁ ଗନ୍ଧ, କାହିଁ ବୋଲ
ଘୁରେ ନିତ ନଭ ସାର
ବାଉଳା ଭଳ ସେ ପଣ୍ଡ । ୦ ।
ଫୁଲ ସଞ୍ଜଟା ଆସେ
ମିଛେ ଦାଉ ସାଧିବସେ,
ମିଳନ ଆଶା ତା' ଆଶା-ବାଲି-ଭୂଇଁ ଗିଣ୍ଡ । ୧ ।
ନାଗସ୍ୱ ନଶିର ଆଖିରେ ଶିଶିର ମାଉ,
ବରହଣୀ ଖୋଜେ ପରଭାତ ପ୍ରୀତି ଗୈର
କ ସୁଖ କେଜାଣି
ଲଭେ ଉଷାରାଣୀ
ଉହାଡ଼.କରେ ସେ ଟାଣି ନାଲ କାନ ଡାର,
ମିଳନ ମନ୍ଦିରେ ଅଭେଦ୍ୟ ପ୍ରବେଶ—ଏଇ କ ଦୁନଆ ଧାର ? । ୨ ।

— ——

(୨୧)

—ଦ୍ରୁତ ଏକତାଲୀ—

(ବନ୍ଧୁ) ସତେ୍ୟ ଏ ମିଳନ ନୁହେ ମନ୍ଦ,
ଭାଷାରେ ତୁମର ବଚନ ନଶୀଥେ
ମିଶାଇବ ଧୂମ-ଛନ୍ଦ । ୦ ।

ତୁମେ ହେଲେ ପ୍ରିୟ ! କାନନ ନଆଳ
ସେଇ ବନ ପଥେ ଯିବ,
ତାରା ଗଣି ଗଣି, ସାରା ନଶି ପନ୍ଥେ
ଉଜାଗରେ ପୁହାଇବ ।
ଯହିଁଥାଅ ତୁମେ,ତନୁ ପରଶି ମୁଁ ଲେପି ଦେବ ମଧୁ ଗନ୍ଧ । ୧ ।

ବସନ୍ତ ଯେବେ ଗୋ,ଆସିବ, ରସିବ
ରସାଳେ ମିଶାଇ ହାସ,
ତୁମେ ହେଲେ, କଳା କୋଇଲି ପ୍ରିୟ ଗୋ !
ହେବ ମୁହିଁ କୁହୁ ଭାଷ;
ବଉଳ ବଣରେ ତହଳ ପକାଇଝୁରାଇବ ମକରନ୍ଦ । ୨ ।

ତୁମେ ହେବ ପ୍ରିୟା କଣ୍ଠ ଯେବେ ଗୋ;
ହେବ ମୁଁ ତହିଁରେ ସୁର
ତୁମର ଗୀତର ମୂରଛନା ହେବ
ଜୀବନର ଆଶ ମୋର,
ଦୁହେଁ ମିଶି, ଆସ ଅକୂଳ ସାଗରେ ରଚିବା ଗୋ ସେତୁବନ୍ଧ । ୩ ।

---

(୨୨)

— ଦାଦରା —

ମୁଁ ଗୋ, ବନ୍ଧୁ ହେଲେ କ ହେବ, 'ସିନ୍ଧୁ ସର ନୋହିବ ॥୦॥

ସେ ଯେ ସାଇତି ରଖେ ଗୋ ରତନ,
ମୋର ଦିଆ ନିଆ ଅତି ପତନ,
ସାନ ବଡ଼ ମୋର
ସମାନ ଆଦର
ସବୁରି ଘରେ ମୋ ପରବ । ୧ ।

ମୁଁ ଗୋ, ଘାସ ବଣ ଗଜ ମୁକୁତା,
ମୁଁ ଗୋ, ଫୁଲ କଳି ମନ-ବାରତା
କଣି ଅଭିସାର
କତି ପ୍ରିୟ ମୋର
ପରଶନ ମୋର ନୀରବ । ୨ ।

ଶଶୀ ଭୁଲେ ମୋର ଭାବ ଗୋ,
ରବି ଢାଏ ପରାଭବ ଗୋ,
ସଞ୍ଜ ସଳିତା—
ଅତି ପରିଚିତା
ସେ ମୋ ଜୀବନର ଗରବ । ୩ ।



(୨୩)

—ଦ୍ରୁତ-ଦ୍ରୁତାଲ—

ସପନ-ପୁରର ରାଜ କୁମାରୀ ସେ—
ବଉଦ ଦ୍ୱୀପରେ ଘର,
ମେଘ ଛୁଆଁ କାନ୍ଥି, ରତନର ଝୋପା
ଚନ୍ଦ୍ର ଆରେ ଖଞ୍ଜା ତାର ॥ ୦ ॥

ଆଶା ନଈଧାରେ ଭରସା ନାଆଟି
ଭସାଇ ଆହୁଲା ଚାଲେ
ଧୂଆଁ ଜଆ ତାର ଆଠ ପହରୀ ଗୋ,
ଭଉଁରୀ ପାଣିରେ ଖେଳେ;
ଘନ ଝଡ ନ ଡରଇ, ଆସେ ସେ ଚୋରୁଣୀ ପରି
ପଲଙ୍କ, କଣ୍ଡରୀ ସବୁଥିରେ ବସେ, ନ ବାଛି ଆପଣା ପର ।୧।

ଝାଆଇ ରଖିଛି ଦୁନିଆଁକୁ ସେଇ
'କାଲି, କାଲି' ବୋଲି କହି,
କାହା ଦୁଆରକୁ 'କାଲି' ଆସେ ଚାଲି
କିଏ 'କାଲି' ଦେଖେ ନାହିଁ,
ଦଣ୍ଡକ ପାଇଁ ଲୋ ଆସି—ବୁଣି ଯାଏ ହସ ଖୁସି
କାହାରି ନୁହେ ସେ ମନ-ଗଲା-ସାଥୀ, ସବୁରିକ କରଇ ମୋର ।୨।

---

( ୨୪ )

—ଦାଦରା—

ସ୍ୱପନ ଗୋ,

ନିତି ତୋହରି ପାଇଁକି ଦୁଆରି ଉଦୁଆଁ ଉଖେଁ
ହସ ମୁହେଁ ତୋର କିଏ ସତେ ସିବ !
ସାରା ସରଜନା ଲେଖେ । ୦ ।
ଅଧରାତି ନିଦ ଦୂରେ ଠେଲି ମୁଁ ଯେ
ବାଟ ତୋର ଗୁହିଁଥାଏ,
ଜାଣୁ କି ସପନ ! କାହାପାଇଁ ତୋତେ
ଏତେ ସତେ ସୁଖ ପାଏଁ ?
ଯେବେ ଚନ୍ଦ୍ରା, ଘୁମରି ମନ କଥା କହେ
ଅଧାଯୋଡ଼ା ଆଖି ପତା,
ମୁଁ ଗୋ ମୂକ, ସେ କବିର ଭୁଲି ବନକର
ଦୁନିଆଁ ର ଛବି ଦେଖେ । ୧ ।
ମନ ସାଥୀରେ ମୋ ମନ ତୋର ସତେ,
ତେଣୁ ପିନା ମିଶିଯାଏ
ହୁଅ ପଛେ ଭୁଲି ମରୀଚିକା
ମୁଁ ଗୋ, ପଛେ ପଛେ ତୋର ଧାଏଁ,
ଜାଣେ, ଦୁନିଆଁ ର ଯେତେ ଭଲ ଭେଲି
(ସବୁ) ତୋର ବାଲିଘର ହସ ଖେଳ,
(ତୋର) ନିଛାଟ ମିଳନ, ମନାସି ତେଣୁ ମୁଁ
ଶୋଇଲେ ସଭଏଁ, ଡାକେଁ । ୨ ।

(୨୫)

—ଦ୍ୱିତ-ତ୍ରିଭାଲ—

ଶୁଖାନା ଲୋ, ଶୀରମୁଖ ଚନ୍ଦ୍ରମା,
ଉପଗତ ମୁଁ ତୋ ଦୁଆରେ
ସବୁ ସବୁ ସାରା ବରଷ ବରଦ
ଫାଟି ଫାଟି ଯାଏ ହିଆ ରେ । ୦ ।
ମୋ ପଥ ଅନାଇଁ ଝାଇଁ ମରୁ ଖରା
ସବୁଛୁ, ଦେଖିଛୁ ଏଇ ଆଖି ତାରା
ସେ କଥା ପାଶୋର ନାହିଁ
ଫଟା ବୁକୁ ତୋର ଗୁହିଁ
ତେଜଲୁ ପୁଣି ଭୁ ସାରା ଫୁଲ ସାଜ
ହେଜ ମନ ଦିଆ ନିଆ ରେ ।୧।
ମାନ ନାହିଁ କାହା ମିନତି, ବାରଣ
ଚପଳା ଚମକ, ବାଜ ଗରଜନ
ପବନକୁ ଡରନାହିଁ
ଆସିଛୁ ତୋ ପାଶେ ଧାଇଁ
ପିଆସ ତୋର ଲୋ ! ମେଣ୍ଟାଇବ ସବୁ,
ହସ ମୁଖେ ଫେର ଗୁହାଁ ରେ ।୨।
ଘେନାଇବ ତୋତେ ଶାଗୁଆ ଶାଢ଼ୀକ
ଖୋସିବ ମଥାରେ ମାଳତୀ କଢ଼ିକ
ଆମର ମିଳନ ଦେଖି,
ନାଚବେ ଲୋ ! କେକା କେକୀ,
ଗଇଷାକ ବାସେ ଗିରହିର ଆସିଁ ପଖାଳବ ତୋର ପାଆ ରେ ।୩।

ନବଦଳ ବାସ ସୁମନେ ଏଥର
ସାଜ ତନୁ ସଦ୍ଧ୍ୱ, ହସ ଦର ଦର
ପଚାଇଛୁ ତୋରେ କର
କୋଟି ସନ୍ତାନ ତୋର,
ଏଶୁଭ ମିଳନ ବାସରେ ବତର, ମନଇଚ୍ଛା ବର ଯାଚ୍ଛାରେ ।୯।

---

(୨୭)

—ଦାଦରା—

ମୁଁ ଯେ ବାଣ୍ଣଧାର ଛନ୍ଦ,
ମାଳଞ୍ଚ ତନୁରେ ଅତର ମାଖିଲ
କେତକୀରେ ଦେଲ ଗନ୍ଧ ॥୦॥

ଭଣ୍ଡାରେ ତାର ସଜାଡ଼ି ସାଇତି
ବାସରେଣୁ ମକରନ୍ଦ,
ବାର ଘର ବୁଲି ମହୁଆ ଅଳରେ
ବୁଲାଇଲ କରି ଅନ୍ଧ ।
ବିଜୁଳି ଚମକ, ଅଶନି ଧମକ

ବଢ଼ାଏ ମୋର ଆନନ୍ଦ ।୧।
ଗୀତ ଗାଏ ଗିରିଝର
ଝଙ୍କାଷ୍ଟ ଧରେ ସୁର
ଡାହୁକ ଦେଲାଣି ତାଳ
ଭେକ ଧଇବତ ସ୍ୱୋଳ

ଓଢ଼ଣା ତଳରେ ଲୁଚ୍ଚାଇ ଧର ମୁଁ
ସରଗର ମଧୁ ଗନ୍ଧ,
ଝୁମୁ ଝୁମୁ ଝୁମୁ ପଡର ଶେଜରେ
ନାଚେ ଛାଳେ ମଧୁ ମନ୍ଦ ।୨।

—o—

(୨୭)

—ଦାଦରା—

ବରଷା-ଝର ରାତିରେ
ଭରସା ହର ଗ୍ଧୁଡିଛି—
ନକ୍ଷତ୍ର ଭରା ନୟନେ
ଲଭିଲା ଜଳ ବର୍ଷୁଛି ।
ଘୁମର ମରେ ସ୍ୱେ କେ ବରଷ୍ମ
ମାଳ ମେଘେ ଶେଜ ବଚ୍ଛାଇ,
ଚହଟ ବଦୁ ଝାଟ ଭାଜ
ଗୁନ୍ଥି କାଞ୍ଚନ ମାଳ
ବାନ୍ଧେ ପୀରତ ସାଥୀଟି ।
କେ ବଦେଶୀ— ରସ ପରଶି
ବଜାଏ ବସି—ବରହ ବଂଶୀ
ଘନ ରଭୁ ରାଗେ, ଅନୁରାଗେ,
ଗାଏ ଦୂରେ ମାର ଝରଇ ।
ଅକୁହା କଥା ମନେ ଲେଖି
ଅଚହ୍ନା ରୂପରେଖ ଆଙ୍କି
ଆଶାରେ ସତେ ମାତିଛି ।

(୨୮)

—ଦାଦରା—

କଥା ମୁଁ, କହିବ ନାହିଁ ।
ବୁଝି ନପାରିଲେ ମନ ମୋର, କହ,
କି ହେବ ଗୋ ଗୀତ ଗାଇ ॥୦॥

ଭାଷାରେ ହୁଏ ଯା ଲେଖି
(ସେ ତ) ମନ କଥା ଢାଏ ଢାଙ୍କି,
ଅକୁହା ଯେତକ, କୁହା ସେଇତକ
ଫିଟା କଥା ଧୂପ-ଛୁଇ ।୧।

ଆଖିରେ ମିଶିଲେ ଆଖି,
ସେ ତ ମନ କଥା ସାକ୍ଷୀ,
ନଶବଦ ଆଖି କଥା— ଦେଲି ଗୋ, ଯେଉଁ ବାରତା
ନ ବୁଝିଲ ଯେବେ,
କି ହେବ ଗୋ ତେବେ—
'ସୁଖ ପାଅ' ବୋଲି କହି ।୨।

---

(୨୯)

—ଦାଦରା—

ଜୋଛନା-ଝର, ଏ ମଧୁରାତି ବୁକୁ-ପରେ
କାଲ ବଇଶାଖୀ ଅଦିନ ବାଦଲ ଝରେ ।୦।

ଦରହାସ ମଖା—ଭସ୍ମ ଲଜ ଲଖା
ଅଧା ଫୁଟା କଳିଟିଏ,
ଦୂର ପରବାସୀ—ଦରଘା ସାଥୀର
ଆଶା ପଥ ଚାହିଁ ରହେ,
କଳା ଘନ ଦେହ ଦାମିନୀ ନୟନ ଠାରେ ।୧।
ସୁଖ ପାଇ ସିନା ସୁଖ ଖୋଜୁଥିଲି
ଜାଣି ନ ଥିଲି ତା ମନ
ସୁଖର ବଦଳେ ସାରା ଜୀବନଟା
ଭୋଗିବ ଦୁଃଖ ଦହନ
ଆଶା ଛଳନା ରେ ମରେ ।୨।

---

(୩୦)

—ଦ୍ରୁତ ଏକତାଳୀ—

କିଏ କହୁଥିଲା ସୁଖ ପାଅ ବୋଲି ସତେ ? ।।୦।।
ମୁଁ ତ ବାସମଲ୍ଲୀ, ପବନେ ଦୋହଲି ଖେଳୁ ଥାଆନ୍ତି ଗୋ ହସି,
ଶତ ଅଳି କୋଳେ ନାଚି ଗେଲେ ଗେଲେ ବସୁଥାଆନ୍ତି ମୁଁ ରସି
ତୁମେ ଡାଳି ଦେଲ ତୁମ ମନ ବୋଲି ଚହଁକି ଲଗା କି ମୋତେ ?
କଣ୍ଠୁ ଭାଷା ଯେବେ ନ ସମ୍ଭବ, ପଥ ଦେଖ ନିଜ ଘୁଏଁ
ଭସ୍ମ ଯଉବନ, ଥିବ ଯେତେ ଧନ, ପସରା କରୁଛି କିଏ ?
ତୁମ ଆଖି ଲୁବ୍ଧ, ତୁମ ଆଖି କୋଣେ ଝରୁ, ଝରିବାର ଯେତେ ।

---

## (୩୧)

—ଦାଦରା—

କୁଆଁଖି ଜହ୍ନର ଗରବ
କେତେ ଘଡ଼ିର ସେ ପରବ
ସେ କି ଗୋ କହୁରୁ ଚିର ? ॥୦॥

ଋତୁ ଯଉବନେ, ଧରା ଯାହା ମଣ୍ଡେ ସରା
ମଧୁ ମାସ ପରେ, ଆସେ ଯେବେ ତାତି-ଖରା
ମୋତେ ପଚ୍ଛେ ସଖି ! ପରତେ ନଯାଅ,
ଆପଣା ଆଖିରେ ମେଘକୁ ଚାହାଅ
ନତ ସେ କି ଗୁହ୍ନଘର ? ।୧।

ବଣମଲ୍ଲୀ କଳି ହସୁଥିଲା ଝୁଲି ଝୁଲି
ଅଳି କରୁଥିଲା ଗେଲେ ଅଳି ବୁଲି ବୁଲି
କାହିଁ ଆଜି ତାର ପାଖୁଡ଼ା ସୁଗନ୍ଧ
କାହିଁ ଆଉ ତାର ମଧୁ ମକରନ୍ଦ
ସବୁରି ଆଜି ସେ ପର ।୨।

ଯଉବନ ଶୋଭା ଦୁ’ଦିନର ମନ ଲୋଭା
ଜୁଡ଼ାରେ ଯତନେ ଯେତୁ ଯେଉଁ ଫୁଲ ଗଭା,
ମଉଳି ଗଲେ ସେ ହୋଇ ହତଶିରୀ
ଭୁଇଁକୁ ଦୂରେ ପରା ଫିଙ୍ଗି ଦେଉ ଗୋରୀ !
ପାଦ ମରଦନ ସାର ।୩।

(୩୨)

—ଝୁଲ—

ବନ ଭୃଙ୍ଗ ରେ ! ଫେରି ଯା ଯା —
କନ୍ତ ପଛେ ମୋର ପୋଡ଼ା କାନ ବୋଲି
ଲେଢ଼ାନାହିଁ ଗୁଣ୍ଡ ବାଜା ।୦।
ମୁଁ ନୁହେଁ ମାଧବୀ ମଞ୍ଜରୀ
ଅଳି କରିବୁ ତୁ ଗୁଞ୍ଜରୀ,
ମାଧବୀ ନଶୀଥେ ସାଜିବ ବାସକ ସଜ୍ଜା
ମଧୁ ଲୁଟି ମୋର ବୋଲାଇବୁ ବନରଜା ।୧।
ଗୃହେନା ତୋ କର ବନ୍ଧନ
ନନ୍ଦା ଚୋର ମୋ ଚନ୍ଦନ
ସଦାଶିବ ଘରେ ଲେଖା ମୋର ନିତ୍ୟ ପୂଜା
ଚମ୍ପକ ମୁଁ ଯେ, ଡନୁ ମନ ଲାଜ-ମଜା ।୨।

---

(୩୩)

—ଦ୍ରୁତ ନିତାଳ—

ଶୀତ ପଦ-ଦଳା ଦୁବ ସରି କେ ତୋର
ଖୋଜି ଖୋଜି କାହିଁ ନ ପାଏ ତ ଆଖି ମୋର ॥୦॥
ନାହିଁ ଅଳି-ଭୁଲା ଗନ୍ଧ,
ଅଧରେ ମଧୁର ଛନ୍ଦ,
ଆଖି କୋଣେ ହାସ ମନ୍ଦ,—
ହେବୁ ରସିକର ହାର ।୧।

ଅନାଦର ତୋର ସାଥୀ
ଅକାତରେ ବୁକୁ ପାତି
ସହୁ ଝାଣ ଖର ତାତି,
ଘୁରୁ ତୋର ଧୁ ଧୁ ଘର ।୨।

ନୋହୁ ବୋଲି ବାସ ଫୁଲ
କେହି ନ ବୁଝିଲା ମୂଲ
କାହିଁ ତୋର ସମତୁଲ
ଦେବତା ଶିରେ ତୋ ଘର ।୩।



(୩୪)

—ଦାଦରା—

ଯେ ନୟନ ରଙ୍ଗ-ହରା,
ସାଜେ କି କଜଳ ଗାର ?
ଯେ ଅଳି ଜାଣେ ନା ଗୁଣ
ସେ କି ଫୁଲ ମନଚୋରା ? ।୦।

ଜୋଛନା ନଥାଇ ଶଶୀ—
ସ୍ୱର ପାସୋରା ବଇଁଶୀ,
କେଶହରା ଶିରେ ଖୋସା
କି ଶୋଭା କୁସୁମ ଝରା ? ।୧।

ଯେ ମନରେ ନାହିଁ ରସ,
ଭୁଲନ୍ତି ଯେ ମୁଖ ହସ,
'ନଆ'ରେ ନଥିଲେ 'ଢଆ'—
ନୁହେଁ କି ଛଳ ଘୋପରା ? ।୨।



(୩୫)

— ଦାଦରା —

ନେବନାହିଁ କହୁ, ଦେବାକୁ ଆସିଛୁ ପ୍ରିୟ !
ପରଛେ ନଗଲେ ତୁଇଁ ମୁଁ କହୁଛୁ ଦେହ ।୦।
ଆସିଛୁ ଦେଖିବ ଖାଲି,—
ଦେଖା ଦେବାପାଇଁ, ନୁହଁ
ପିପ୍ପାସୀ ଆଖିରେ ମୋର,
ରଖିଛୁ ଭରାଇ ଲୁହ,
ତୁମ ହସ ମୁହେଁ ଦେବ ଗୋ ଲଗାଇ, ମନର ସାଇତା କୋହ ।୧।
ତୁମ ଆଖିତଳ ଛବି
ଲେଉଟାଇ ମୁଁ ନେବ ନାହିଁ,
ଘୁମ-ଶେଯ ତୁମ ମନ
ଥାଉ ଫୁଲ-ଶେଯେ ଶୋଇ
ନଦରୁ ଉଠିଲେ ଦେଖିବ,—ଚରଣେ, ଡାଳି ଦେଇଗଲି ସ୍ନେହ ।୨।

—o—

(୩୬)

—ଦାଦରା—

ଯେବେ, ଚନ୍ଦ୍ର ଦେଲା ହସି
ଫୁଲ, ମନଟି ସାରା ଖୁସି,
(ସେଯେ) କୁଞ୍ଜତଳେ ଝୁଲି
ଦେଲା, ପାଖୁଡ଼ା ବାସମେଲି । ।୦।

ତେଣେ, ଚନ୍ଦ୍ର ଲାଗି ତାଙ୍କ
ଝୁରି, ଚେଇଁଛନ୍ତି ସଙ୍ଗତସାଙ୍ଗ
ଫୁଲ,ଗରବେ ଗଲା ଫୁଲି
ଭୁଲି, ଏକାକୀ ତାର ବୋଲି ।୧।
ଆଜି, ଫୁଲଆ ଭାଙ୍ଗିଛି ସ୍ୱର୍ଗିଲ ସପନ ତାର
ଆଜି, କୋଣକୁ ଝରିଲା ଅନୁତାପ ଲୁହ ଧାର,
ଦେଖି, ପାଖୁଡ଼ା ତାର ଖୋଲା
ବାସ, ପବନ ହରିନେଲା
ଆହା, କକଳି ବୋଲି ବୋଲି
ଫୁଲ, ସାଥୀ କଲା ତାନ୍ତ ବାଲି ।୨।

———

(୩୭)

—ଦ୍ରୁତ ଏକତାଲୀ—

କହନା ବନ୍ଧୁ ! କିଏ ସେ କାହାର ସାଥୀ । ୦ ।
ଚନ୍ଦ୍ର ମଲ୍ଲୀକା ସଙ୍ଗରେ ଯେବେ
କୁଞ୍ଜ ତଳପେ ବସେ,
ସାରା ଦେହେ କୋଳ ବାସନା ଅତର
ମନ ଭରି ହସ ହସେ,
ଛଇଳ ମଳୟ ଆସେ—
ଘୁରିବୁଲେ ଚଉପାଶେ
କିଏ କାହାପାଇଁ ଅଭିସାରେ ସତେ
ରହିଁ ବସେ ସାରା ରାତି ?
କହନା ବନ୍ଧୁ କିଏ ସେ କାହାର ସାଥୀ ? । ୧ ।

ମିଠି ମିଠି ଗୁହ୍ନିଁ ମାଳ ଓଢ଼ଣାକୁ

ଠେଲଦେଇ ବଳେ ବଳେ

ଟିକ ତାରାଟିଏ କାହୁଁ ଆସି ସତେ

ହସେ ଫୁଲସଞ୍ଜ ବେଳେ,

ମାଳ ନଭପଟେ ଶଶୀ—

ହସି ଦେଖାହଏ ଆସି

ତାରା ଅବା ଶଶୀ କଏ କାହାଲାଗି

ଅଭିସାରେ ପାତେ ଗ୍ରନ୍ଥି ?

କହନା ବନ୍ଧୁ ! କଏ ସେ କାହାର ସାଥୀ ? ।୨।

---

(୩୮)

—ଦାଦରା—

**ନେ**ଇଯା, ନେଲେ ଗୋ ଫେର

ତୁମ ଦିଆ ହାର ସେ ତ ତୁମର ।୦।

ଯୋଡ଼ା ଯୋଡ଼ାଆଖି ଅଛୁ ତାର ସାକ୍ଷୀ

ଆଜ ସାକ୍ଷୀ କୁଆଁ ତାରା,

ସାକ୍ଷୀ ଅଛୁ ତାର—ଦୁଇ ଲୁହଧାର,

ହସ କାନ୍ଦରେ ଯା ଭରା

ଗୁହ୍ନିଁ ଥାଏ ତଳେ ଝର ।୧।

ସବୁ ପଛେ ନଅ—ମାଗୁଛୁ ମୁଁ ଦିଅ

ଫୁଲର ପାଖଡ଼ାଟିଏ

ଆଖି ଦେଖା କର ସାଇତ ସୁମର

ରଖିବ ଶୁଖିଲା ଯାଏ

ଥିବ ଝେସ କବରୀ ଘେର ।୨।

---

(୩୯)

—ଦ୍ରୁତ ଏକତାଳୀ—

ଛାଇ ତୋ ବାଇ କରେ ସଜନୀ ରେ ।୦।

ବଉଳ ରସିଆ ପିକ

ଦିଏ ଯେବେ କୁହୁ ଡାକ,

ସେ ତୋ ଗୀତ, ସତେ ମୋର

ବୁକୁରେ ଚମକ ଉଠେରେ ।୧।

କଉଳ ଭୁଲା କୋଇଲି

ଡାକେ ଯେବେ କୁହୁ ବୋଲି,

ଜହ୍ନ ମଣି ଚମକେ ମୁଁ,

ତୋ ଗୀତ ମୋ କାନ ଉଠେରେ ।୨।

ସଞ୍ଜୁଆ ସମୀର ଝୁର

ପରଶି ଫୁଟାଏ ଫୁଲ,

ଗନ୍ଧ-ଫୁଲ ବୋଲି ତୋର,

ତୋଳି ମୁଁ ନଗଣେ ମରେ ।୩।

ଶୁଣେଁ କଥା ତୋର ସଖୀ !

ପାଶେ ଥିଲି ପର ମୁହିଁ,

ପୋଡ଼ା ଆଖି ତେବେ କାହିଁ

ନ ପାଏ ଦରଶନ ରେ ।୪।

ସପନରେ କେବେ ଆସୁ

ଦରହସି ପାଶେ ବସୁ,

ଅଞ୍ଚଳ ଟାଣି ଚେତନେ

ପବନ ମୁଠାରେ ଧରେ ।୫।

———

(୪୦)

—ଦାଦରା—

ଜାଣେ ଗୋ ! ଜାଣେ,
ଚଞ୍ଚଳ ସେ ତୋ ଅଞ୍ଚଳ ତଳେ
ଲୁଚକାଳି ଖେଳେ କଣେ ।୦।

ହାତ ସଜ ତୋର ବଗିଚ୍ଚ ମଝିରେ
ସେଇ ଯେ ମାଧବୀ ଲତା,
କଳସୀ ଭରାଇ ଜଳ ଢାଳୁ ତୁ ଯେ
ନିତି ଦେଖେ ମୁଁ ସେ କଥା
ମୀର-ଭରା ଆଖି କୋଣେ ।୧।

ଅଯତନେ ଯେଉଁ ଦୁବା ଟେକନ୍ତି ମଥା
ନ ପାଏକ ସେ ତୋ କଳସୀର ଜଳଟୋପା ।
ତେବେ କହ ସତେ ଅକାଳେ ସକାଳେ
ହାମା ହେବ କି ଗୋ ମୋତେ ମନେ କଲେ
ପାସୋରା ତୋ ସାଥୀ ଯଣେ ? ।୨।

———

(୪୧)

—ଦାଦରା—

ପଡ଼ିଛି ମନେ ଘୁଇ ଘୁଇ, ଥରେ ବନେ
ନୟନେ ନୟନେ ସେ ମିଳନ ।୦।

ସେ ଫୁଲ ମଧୁ ମାସିଆ—ସତେ ସେ କି ଉଦାସିଆ
ତୁନି ତୁନି କଥା କୁହା, ଚେତ ଦିଏ ଭୁଲି ଦିନ ।୧।

ମାୟା ହରଣୀ ସେ – ଯାଏ ଫେରି, ଆସେ
ମିଛେ ଖାଲି ଆଖି ଭୁଲାଏ – ଛପି ଛପି ଛଳ ଖେଳାଏ,
ସ୍ୱପ୍ନଛବି ଯାଏ ଭାସି, ସତେ କି ଦିନ-ସପନ ।୨।

ଭୁଲି ମନ କଲେ, ଠେଲି ପଶେ ମନ-ଘରେ
ଅତି ଅଲାଜୁକ, ସ୍ମୃତି ବୋଲି କହ ଯା'ରେ,
ସେ ପାଶରି ଭୁଲି ଯେବେ—
କାହିଁକି ଏ ମନ ତେବେ,
ଝୁରେ ତାରେ ଅନୁଦିନ ।୩।

---

(୪୨)

—ଦ୍ରୁତ-ଏକତାଳୀ—

ପ୍ରିୟ ଗୋ, ତୁମରି ଚଲାପଥ ଅନୁସରି,
ମନକୁଞ୍ଜରେ ଆଶାର ଗୁଞ୍ଜନ
ପଡ଼ୁଥିଲା ଝରି ଝରି ।
ବଉଳ ମହକ, ଚନ୍ଦନ ବନରୁ
ଦୂର କରୁଥିଲା ମହଳ ମନରୁ,
ଆଶା ନବଶାର ଫୁଲଦୋଳା ମୋର
ଝୁଲୁଥିଲା ଥିରି ଥିରି ।
ତୁମେ ଗୋ ଆସିବ, ତନୁ ପରଶିବ
ହସିବ ଅଧର ଭରି ।୧।

ମଣ୍ଟିଚକା କେବେ ମାର ତ ଘାଲଟି ନାହିଁ
ମନ ଆଶା ସବେ ପୂରିବ ଗୋ, ମୋର କାହିଁ ?
ଆଖି ଦେଖା ଦୂର ଲେଖାରେ ରହିଲା
ସପନର ଛୁଇଁ, ଚେତନେ ଲୁଚିଲା
ହତାଶ ବତାଶ ସହି ବଞ୍ଚିବ କି
ଜୀବନଟା ଏଇପରି ? ।୨।

---

(୪୩)

—ଦ୍ରୁତ-ଏକତାଲି—

ବରଷାର ଏଇ ଧାରା ଝରା ନିଶିଥିନୀ
ତୁମ ଚଲାପଥ ମଣାଇ ନେବ ଗୋ,
ଚମକି ସଉଦାମିନୀ ।୦।
ଯେବେ ରାତି ଜାଗି ଜାଗି—
କଦମ୍ବ ଗୋ ବିକଶିବ,
ଯେବେ ଲତା ଦୋଳି କୋଳେ—
ମାଳତୀ ଗେଲେ ହସିବ,
ଝଞ୍ଜା କହିବ ଘରେ ରହ ବୋଲି,
ତୁମେ ହେବ ପରବାସୀ—
ପ୍ରିୟ, କାହାର କୁହା ନ ମାନ । ।୧।
ମୁଁ ଯେ, ଯକ୍ଷ ବଧୂର ଆଖି ଭରା ନୀର
ତୁମର ପାଇଁକି ଆଣିବ ଉଧାର,
ମନର କବିତା ଲେଖିବ ମରମେ
କାଳିଆ ଅଞ୍ଜନେ ଗୋଳି—
ପ୍ରିୟ, ବାରଣ ବାଧା ନ ଘେନ ।୨।

---

(୪୪)

—ଦାଦରା—

ସାରାଟି ଜଣି ଝୁରି ଫୁଲଟି ବାସି
ତୁମରି ଆଶାରେ ପ୍ରିୟ ! ପ୍ରୀତି ପିଆସୀ ।୦।

ସଞ୍ଜ ମେଘ କାନ ଛୁଇଁ
ଲୁଚି ଯେବେ ଗଲା ଜହ୍ନ,
ଆଖି ଆଗେ ସାକ୍ଷୀ ଥିଲା
ଭୁଲି ଛନ୍ଦ ଦରହସି—
ପରଶ ପିୟାସୀ (ସେ ଯେ) ।୧।

ତନୁ ଭରା ଯଉବନ
ରସ ଭରା ସାରା ମନ
ସମ୍ପି ଦେଲା ସୁକୁମାରୀ
ଛଳନାରେ ହସି ହସି—
ପରଶ ପିଆସୀ (ସେ ଯେ) ।୨।

ଉଇଁଲା ଶୁକଆ ତାରା
ହେଲାଣି ଶାହାନ୍ତ ପରା !
ମଳୟ ତୁ ଗଲୁ ଖସି
ପରଶ ପିଆସୀ (ସେ ଯେ) ।୩।

———

(୪୫)

—ଦ୍ରୁତ-ଏକତାଳୀ—

କୁଞ୍ଜରେ ମଞ୍ଜୁ ଗୁଞ୍ଜନ ଦେ'ନା
ଛୁଇଁ ତନୁସାରା ଜଣି ଝୁରନା ।୦।
(ଗୁଞ୍ଜନ ଦେ'ନା)

ଗୃନ୍ଧ ନନ୍ଦାର—କୁସୁମ କୁମାରୀ
ଆଶାପଥ ହେରି - ଝୁରୁଛି ସେ ତ ଘରି
ଲମ୍ପଟ ରେ ! ମିଛେ ମନ ଭୁଲନା ।୧।
(ଗୁଞ୍ଜନ ଦେ'ନା)

ଶଠ ଘରଆ ରେ—ଫେରି ଫେରି ଯା ରେ
ବଉ ବଉନା ରେ ଝୁରି ମରନା ରେ
କଣ୍ଠେ ମଧୁଭରି ମାନ ସହନା ।୨।
(ଗୁଞ୍ଜନ ଦେ'ନା)

ତୁ ରେ, ପରଦେଶୀ— ହଟ କରୁ ଆସି
ପୀରତି ପିଆସୀ-ସେ ଯେ ସବେ ଆସି
ଗନ୍ଧ ହରି ଧୂଳି ଛଳପେ ଲସାନା ।୩।
(ଗୁଞ୍ଜନ ଦେ'ନା)

---

(୪୬)

—ଦ୍ରୁତ-ଏକତାଲି—

କବତା ! ତୁମେ ଗୋ, ଆଜ ଛନ୍ଦ ହରା
ପଥ ଭୁଲି ସିନା ଆସିଲ ମିଛେ ଗୋ,
ଆଖି ଯେବେ ଲୁହ ଭରା ।୦।
ଆଜ ଏ କୁଞ୍ଜେ ମଉଳା ଫୁଲର ସଭା
ମୁକୁଳା ଦେଖ ଗୋ, ନବ ମଲ୍ଲୀକା ଗଭା
ଝରା ପାଖୁଡ଼ାର ଶେଷ ଲେଉଟାଇ
ପାଗଳ ପବନ ସୁବାସ ଖୋଜଇ,
କୋଇଲି,—କୁହୁ-ପାଶୋରା ।୧।

ଯେ ଅନଳ ଜଳ ଆଲୋକୁ ଥିଲି ମୋ ଧରା
ସେ ଅନଳ ଆଜ ଜାଳି ମାରେ ସମଗ୍ର,
କମଳିନୀ ଯା'ରେ ମରୁଥାଏ ଝୁରି
ଦୂରେ ଯାଏ ସେଇ ମଧୁକର ହେରି
ଅସହ ମିଳନ ଜ୍ୱାଳା । ୨ ।

ଯାଇଛୁ ସେଦିନ ତୁମେ ଗୋ ଯେବେ କବରୀ,
ଘୁମ ନୟନରେ ଦେଖାଇ ଦିଅ ସବରୀ
ସପନ ଫଗାଟି ନଶି ଶେଷେ ଆସି
ସେଦିନ ଚେତାଇ ଲେଖେ ଏବେ ବସି
କପାଳରେ ଫଟା ଗାରା । ୩ ।

— — —

( ୪୭ )

—ଦ୍ରୁତ-ଏକତାଳୀ—

ତୁମର ଆଶାରେ ପ୍ରିୟ !
ଡେଲି ଶୃଙ୍ଖଳି ଦରଦସି ପରା
ଗନ୍ଧ ଗୈର ମୋ ଦେହ । ୦ ।
କାଦମ୍ବିନୀ-ଶେଯରେ ଘୁମାଇଁ ଥିଲି ସେ
ଜହ୍ନକୁ ପଚ୍ଚୁର ମିଛ କି ସତ
ଛାଆଁ ପହୁଡ଼ରେ କାନେ କାନେ ଚାର
ଶୁଣୁଥିଲି ଅଳି ରସିଆ ଗୀତ
ଛୁଟାଇ ପୀରତି ସୁଅ ।
ସେଇ ଆସିଥିଲି ଭୁଲାଇବ ବୋଲି
ନାଆଁରେ ଡାକିଲି ପିଅ । ୧ ।

ଦୁଆରୁ ତାକୁ ମୁଁ ଫେରନ୍ ଜ ଗୃହିଁଲ—
ଏକା ତୁମ ଲାଗି ବନ୍ଧୁ !
ଉଚ୍ଛୁଳିଲା ସାତ ସିନ୍ଧୁ
ତଟକୁ ପଥର ବାଟ ଗୃହିଁ କେତେ
ଝରିଛୁ ତାତଲା ଲୁହ,
ଘାଟିଛୁ ଏ ଗୀତ, ଫିଟିଛୁ କ କେବେ
ଏଇ ଅଭିମାନୀ ମୁହଁ ?
ଦେହ ଛୁଇଁ ସତ କହ,—
ଫେରିଗଲେ ଫେରସାଅ । ୨ ।

---

( ୪୮ )

—ଦ୍ରୁତ-ଏକତାଳୀ—

ମନେ କ ପଡ଼େ ନା ପ୍ରିୟ !
ଗତ ବରଷାର ନର୍ତ୍ତନ ନଶୀଥେ
ଛୁଇଁଥିଲ ମୋ ଦେହ ? ।୦।
କଦମ୍ବ ଯେବେ ଗୋ, ପୁଲକ ଉଠିଲା
ଶୀତଳ ଶୀକର ଲାଗି,
ବଉଦ ଖୋଜିଲା ସାରା ଆକାଶ ଗୋ,
ବନ୍ଧୁ-ପ୍ରେମ-ବଇରାଗୀ,
କେତକୀରେ ଆସି ବାସ—ସଇସେ ଦେଲା ପରଶ,
ଶୀତ କଣ୍ଟା ଯେବେ ତନୁରେ ତାହାର
ଫୁଟାଇଲା ଭୂଲା ମୋହ
ମନେ କ ପଡ଼େ ନା ଅଧରେ ଅଧର
ଘରଷଣ ? – ସତ କହ ।୧।

ଆଖିରେ ଆଖିରେ ଲୁହା କଥା ଯେତେ
ଆଜ ବୁକୁ ତଳେ ସାକ୍ଷୀ ଦେବ ସତେ
ଅଧା ଖିଆ, ଅଧା ଛୁଇଁ
ସେ ଦିନ ତ ଭୁଲି ନାହିଁ
କେହି ନ କହିଲେ ଆଜ ବି କହିବ
ଆଖିର ଏ ଟୋପା ଲୁହ,
ଦିଆ ଫୁଲ ହାର ଗରୁ ହେଲା ଯେବେ
ଦିଅ ପ୍ରିୟ ! ଫେରି ଦିଅ ।୨।

---

(୪୯)

—ଦ୍ରୁତ-ଏକତାଳୀ—

କୁଞ୍ଜରେ ମଞ୍ଜୁ ଗୁଞ୍ଜେ ଭ୍ରମର
ମଧୁ ଫୁଲ ସଙ୍ଗେ – ରସି ମନ ରଙ୍ଗେ
ଗୁନ୍ଦଣା ଗୁନ୍ଥି, ସାରା ।୦।
ଏଇ ତ ଅଧରେ ତା'ର ଦରହାସ ଝରେ ଗୋ,
ଏଇ ତ ନୟନେ ତା'ର ମନ କଥା ଭରେ ଗୋ,
ନତ-ହରା ଆଖି ତାରା
ଝୁରେ ନଣି ସାରା ।୧।
ବିରହ ବଇଁଶୀ ସୁର ଦୂରୁ ଭାସି ଆସେ ଗୋ,
ବିଜନ ନଶୀଥେ ମନେ ମାନସୀ ନିରାଶେ ଗୋ,
କଥା କହ, କହ କଥା
ହର ମନ ଭାର ।୨।

ବସନ୍ତେ ବଜାନ୍ତି ଗୁନ୍ଦ-ବନ୍ତ ଗଥ ଗୁନ୍ଥି ଗୋ,
ମଉଳାନ୍ତି ଫୁଲ ଶେଯ ଟାକ ରହି ରହି ଗୋ,
ବାସ – ହର ହେଲା, ଶୁଖି
ଗୁନ୍ଥା ଫୁଲ ହାର । ୩ ।

---

( ୫୦ )

—ଦାଦରା—

କୁଞ୍ଜେ ସେ ଦିନ ସଞ୍ଜ ଗୋ, ଏଇପରି
ଗୁଞ୍ଜନ--ରତ ଭୃଙ୍ଗ ଗୋ, ଏଇପରି । ୦ ।

ଛଳ ଆଖି ତଳେ ପଡ଼ୁଁଥିଲା ଗୋ ଜଳ,
ମଉଳ ମଉଳ ଆସୁଥିଲା ଶତଦଳ,
ମିଳନର ଶେଷ ଚୁମ୍ବନ ଦେଇ—
ଚକୁଆ ଚକୋଇ ବେନ,
ନଣ୍ଡ ପାରିହେଲେ ସେ ଦିନ ତ ସତେ
ଉଡ଼ି ଉଡ଼ି ଏଇପରି । ୧ ।

ବିରହ ଡାକରେ ଫାଟି ଯାଉଥାଏ ଚିତ୍ତ,
ବିକଳ ନ ସହି ପାରୁଥିଲା ଦୁଃଖ ଘାତ,
ଝୁରି ମାର ସାରା ହୋଇ ନାହିଁ ପରା
ଖରା ଏ ଜୀବନେ ନ ଦିଏ ତ ଧରା
ନଣି ମୋ ନଣିରେ ରହିଲା ତ ସତେ
ନତ ନତ ଏଇପରି । ୨ ।

ଆଶା ଘର କୋଣେ ଛଳନା ଜାଗେ ଗୋ, ଜାଗେ
ଦେହଛଟା ବଢ଼ଏ ବହନ ଗୋ ଅନୁରାଗେ,
ଫୁଲ ଝରେ, ଫୁଲ ଜନମ ବଢ଼ାଏ
ବରଷ ଜଣି କ ହେଲା ତା' ପରାଏ
ଜୀବନରେ ଏଇପରି । ୩ ।



(୫୧)

—ଦ୍ରୁତ ଏକତାଲୀ—

କୁମୁଦନୀ, ଫେରି ଫେରି ତୁ ଯା'ନା
ଭରା ମଧୁ ଝରା ସାରା ରାତି ସୁହାନା ॥୦॥
ଅଙ୍ଗେ ବାସ ମାଖି ବେଣି ସାଜ ତୋ ଲାଗି,
ଜାଗିମାଗି ସେ ମୋ ସାଥୀ ଝୁରେ ପଥ ଚାହିଁ
ନୟନ କୋଣରୁ ତାର ଧାର ନୀର ଝରଣା । ୧
କହି ନାହିଁ କ ଗୋ ସତେ ଚକୋରୀ ବାରତା ତାର
ମିତ ବସି କେତେ କଥା କହିଥିଲା ସଖୀ ମୋର,
ପାଶୋରା ମନ କି ତୋର କୁମୁଦନୀ ଧନରେ
ମାନ ମାନ, ସଜନୀର ମାନ ସରନା । ୨ ।



(୫୨)

—ଦାଦରା—

କନ୍ଦୁରେ, ଝୁରି ମରେ, ସାଥୀ–ହରା, ଏ କାମିନୀ,
ନୀର ଭରା, ଆଖି ତାରା, ଜଣି ସାରା ଏକାକିନୀ ॥୦॥

ଏଇ ସେ ଚନ୍ଦ୍ର ଚାହିଁଛି
ସେଇ ଚକୋରୀ ଗାଉଛି,
ସୁନୟନା, ହେଲ ସିନା, ସେ ତୋ ବିନା,ତ ମାନିନୀ । ୧ ।
ଫେରିଲ ମଳୟ ହାରି, ରେ
ପଲ୍ଲବ କର ଠାରି ରେ
ସାରା ଦିନ ସାରା ହେଲ ତ— ଡାକ ପଥ ଟାକ କୋଇଲି
ନୀରବ ସେ, ଅନାଁ ଅନାଁ, ଝୁରେ ବସି, ବିଷାଦିନୀ । ୨ ।
ଏଇ ତ ସେଦିନ ସଞ୍ଜରେ
ଶୁଭୁଛି ମୁରଲୀ କୁଞ୍ଜରେ
ଗୁଞ୍ଜରେ ମଧୁ ଭୃଙ୍ଗରେ ଚାହିଁ ଚାହିଁ ସେ ଗତ ଯାମିନୀ । ୩ ।

---

(୫୩)

—ଦ୍ରୁତ-ଏକତାଲୀ—

**ଜାଗି ଯାମିନୀ, ସଜନୀ !**

ବିଫଳେ ଯାଏ ଗୋ ବିତି ମଧୁ ଝରା ଚାନ୍ଦିନୀ ॥ ୦ ॥
ଏଇତ ପୂରୁବ ଘନେ ଛୁଇଁ ଯାଏ ଊଷା କାନ୍ତି
ପହିଲି କୋଇଲି ଡାକେ ଶେଯ ତେଜ ମାନିନୀ । ୧ ।
ଫୁଲୁରି ଅତର ଦେଇ ମଳୟ ତ ଫେରିଲାନି
କୁମୁଦିନୀ ମନ କଥା ଆଖି ତଳେ ମଲାନି । ୨ ।
ସଜା ସଜ ମଜା ତନୁ, ନାରଖାର ହେଲାନି
ଅନାଁଲେ ମୋ ଦଶା ହେବ ଝୁରି ଝରେ କାମିନୀ । ୩ ।
କୁହା କଥା ଅଧା ଫୁଟି ଅଧାରୁ ମଉଳିଲାନି
କବିଚନ୍ଦ୍ର ଚାହିଁଥିଲ ଲୁହ ଦେଖା ଦେଲାନି । ୪ ।

---

(୫୪)

—ଦାଦରା—

ନୀଦ ହରା ରାତି ବିତାଏ ସତେ ଗୋ ପ୍ରିୟ !
ସତ ଅବା ମିଛ, ଯାହା! ତୁମେ ମନେ ନିଅ ॥ ୦ ॥

ଯେବେ, ରୁଷି କହେ ନାହିଁ କଥା,
ଯେବେ, ଟେକ ରୁହେଁ ନାହିଁ ମଥା
ତୁମେ, ଆଖିରେ ନ ଦେଇ ଦେଖା
ଆଖି ପଚା ତଳେ ସାକ୍ଷୀ ଥାଅ । ୧ ।

ଯେବେ, ଚନ୍ଦ୍ର ଜାଗେ ନଶି ଅଧେ,
ନଈ ସେପାର ଚକୋର କାନ୍ଦେ
କାନେ ଅଶବଦ ବାଣୀ ଶୁଭେ
ନଈ ଏପାର ଚକୁଆ କୋହ । ୨ ।

ସତ, ମଣ କ ମୋ ଅଭିମାନ
ସେ ତ, ଓଢ଼ଣା ତଳର ମାନ
ତୁମେ, ଦେଖି ଦେବ ବୋଲି ସିନା—
ମୁହଁ ଯୋଡ଼ି ଲୁଚଏ ମୁଁ ଲୁହ । ୩ ।

ସୁଖ, ଲାଗେ ତୁମ ରୁହୁଁ କୁହା
ସତେ, ପୁରୁଣା ପାଲଟେ ନୂଆ
ଦିଆ ମନ କ ଲେଉଟି ଆସେ ?
ରାଣ ମୋର, ପ୍ରିୟ ! ସତ କହ । ୪ ।

———

(୫୫)

—ଦ୍ରୁତ ଝିତାଲ—

ତୁମରି ଆଶାରେ ମୁଁ ଗୋ !
ପଥ ନିତି ଝୁରେଁ ଛି,
ତୁମରି ଭାଷାରେ ମୁଁ ଗୋ !
ଗୀତ ନିତି ଗାଏ ଛି । ୧ ।

ତୁମ କୁଞ୍ଜବନେ ନିତି ଗୁଞ୍ଜରେ କାନେ
କୋଇଲି କୁହୁ କୁହୁ,
ସାରାଟି ରାତି ନିତି ସତେ ଗୋ !
ଚେତି ମୁଁ ଥାଏ ଛି । ୨ ।

ଫୁଲ ସଞ୍ଜ ଯେବେ ଦେଇ ଆସେ
ତୁମ ଅଙ୍ଗ ଗନ୍ଧ ଭରି ବାସେ
କା' ମନା ମନ ନାହିଁ ମାନେ
ତା ପଛେ ଧାଏଁ ଛି । ୩ ।

କେ କଳଙ୍କ ରଟେ ମୋର ନଗର ବଜାରେ—
ତୁମେ ମୋ ମନ ଚୋର
ଏ ଭରା ଆଖି ନିତି ଝୁରି ଗୋ !
ଝର ଝର ଏ ଛି । ୪ ।

---

(୫୭)

—ଦାଦରା—

ନୟନ ଦୁଆରେ, ଆସି ଫେରେ କେ'ରେ
ଛପି ଛପି ସେ, ଚୁପି ଚୁପି ସେ, ଥରଇ ହୃଆରେ । ୧ ।
ନବ ଲୁଇ ଗୁଇ, ଚୁମି ଚୁମି ନାହିଁ
ସପନ ଘେର, ତନୁରେ ମୋର, ଦେଲା ଛୁଆଁରେ । ୧ ।
ମନ ଚହଲାଇ, ଗେଲାଇ ଗେଲାଇ
ମତାଇ ମୋତେ, ଚେତାଇ ସତେ ସପନ ଦୁଆରେ । ୨ ।

---

(୫୭)

—ଦ୍ରୁତ-ତ୍ରିତାଳ—

ବିତଇ ତ ଯାମିନୀ, ମଉଳଇ କାମିନୀ,
ଗିରି ଶିରେ ଅନାରେ, ଶଶୀ ମାଗେ ମେଲାଣି ॥ ୦ ॥
ମଳିନ ପ୍ରଦୀପ ଶିଖା, ନୟନ କଜ୍ଜଳ ରେଖା,
ନୀର ଝର ସଖୀ ରେ, ଧାର ସାର ହେଲାଣି । ୧ ।
କହିବୁ ରେ, ସମୁଝାଇ ମୋହନ ବଂଶୀ ବଜାଇ
ନିଶିବନ ସଜନୀ ! ରାଧା ଝୁରି ମଲାଣି । ୨ ।
ଚାହିଁ ଚାହିଁ ପଥ ନିତ କେତେ ସହେ ସନ୍ଦେହ ଶ୍ରୁତ ?
ଦଗାଦାର ସଙ୍ଗ ! ତା କଣ୍ଠ କଣ୍ଟ ଗଲାଣି । ୩ ।

---

(୪୮)

—ଦ୍ରୁତ ଏକତାଳୀ—

ଯଦି, ନାହିଁ ଗୋ ରଙ୍ଗ ନୟନ କୋଣରେ ତୋର
ତେବେ କି ହେବ ଗୋ ମିଛେ ରଞ୍ଜି କଜଳ ଗାର ॥ ୦ ॥
ଯଦି କାମିନୀ ପାଖୁଡ଼ା ଝରି,
ଯଦି ମକରନ୍ଦ ବାସ ହରି
ଯଦି ଅଳି ଭୁଲେ ଗୁଣୁ ସୁର
ସେକି କେବେ ଫୁଲ ମନ ଘେର ? । ୧ ।
ସରାଗ ପାଶୋରି ମନ
ଜୋଛନା ନଥାଇ ଜହ୍ନ,
କୁହୁ ତାନ ଭୁଲି ମଧୁ ମାସ
ତୁଚ୍ଛା ଲେକ ଦେଖା କାରବାର । ୨ ।

---

(୪୯)

—ଦ୍ରୁତ-ଏକତାଳୀ—

ଢାଳି ଦେଲୁ ଯେବେ ହଥା ଫୁଲ,
ମୁଁ ଗୋ, ଦେଇ ଜାଣେ ଭଲ ତାର ମୂଲ । ୦ ।
ଅପରାଧ ମୋର ପାରୁଛି ମୁଁ ଠଉରାଇ,
ଢୁଣ୍ଡୁଛି ପଥ ମୁଁ ମରମେ ତୋତେ ବସାଇ,
ଆଦର ବଦଳେ, ଦେଇଛୁ ଆଘାତ
ଚୂନା କଲୁ ଗଢ଼ା ଦେଉଳ ମହତ
ଭଲ ପାଲଟିଲି ଭେଲ । ୧ ।

ଅଭୁଲା ହେଲେ ବି, ପାରିବ ପାଶୋରି ତୋତେ
ଥିଲାଯାଏ ଜଣେ ଗୃହୁଁ ଥିବା ଜନ ମୋତେ,
ସାଉଁଟା ଫୁଲରେ ଆଦର ବଳାଇ
ସତକୁ ଛଳର ସପନ ଫଳାଇ,
ଝୁରି ମରା ହେଉ ଫଳ । ୨

(୭୦)

—ଦ୍ରୁତ-ଏକତାଳୀ—

ଯା ଲାଗିରେ ଝୁରି ମରା
ନିତି ମୋର ଆଖି ଝରା
ବାରିବାକୁ ତୋତେ ପରା
ଲାଗିବ ଜୀବନ ସାରା ॥୦॥
ଆଜିର ଏ ବଇଭବ
ହସ ଲୁହ ମଉଛବ
ଭ୍ରମରର ମନ ହରା—
କାଲିକି ଛୁଇଁବ ଧରା ।୧।
ତେବେ ଆରେ, ଚନ୍ଦ୍ରମୁଖୀ,
ଏ ସରାଗ ଥିବ କାହିଁ ?
ଯା ଲାଗି ମହତ ସରା
ହେବ ସେ ମନ-ପାଶୋରା ।୨।
ଚାନ୍ଦରେ ନ ଥିବ କର
ସେତିକି ମୋ ଭଲପାର
ଆଜିର ଏ ମନ ଧାରା
କରିବ କିଏ ପସରା ? ।୩।

(୬୧)

—ଦ୍ରୁତ-ଏକତାଲୀ—

ତୋଳ ନେଲ ନାହିଁ, କଳିକାଟି ଯେବେ
ଝରା ପାଖୁଡ଼ାଟି ହୁଅ ଦଳ,
ବୁଝିବ ଗୋ ତେବେ, ପ୍ରିୟ ପଦ ଛୁଇଁ
କର ଜାଣେ ସେ ଗୋ ହଉଜ୍ଜ୍ୱଳ ॥୦॥

ପାଶୋର ଦେଲ ଯେବେ ସପନ ଗ୍ରୁଇ ଠେଲ
ମରମ କହୁଥିଲ ସରମେ ଫୁଲ ଫୁଲ,
ସାରାଟି ବୁକୁ ଚିର, ଦେଖିଲ ନାହିଁ ଥରେ
ସେ ମଧୁ ଗନ୍ଧ ନିଶି ଗଲ ଭୁଲ ।୧।

ବାଜଲା ବାଆ ତଲେ, ମନେ କ ପଡ଼େ ପ୍ରିୟ !
ସେ ହିନ ମିଳନର କୋଇଲ କୁହୁ, କହ
ଭ୍ରୁମର ଲଗି ପରା ମହୁଆ ବହୁଥିଲ
ବଉଦ କାନ୍ଥି ତଳୁ ଗୁନ୍ଧନୀ ଗୁହୁଁଥିଲ
ସଞ୍ଜ ଧୀପ ଯେବେ, ଜୀବନେ ଜାଳ ନାହିଁ
ମରଣ ଚିତା ତଳେ ହୁଅ ଜାଳ ।୨।

—————

(୬୨)

—ଦ୍ରୁତ-ଏକତାଲୀ—

ଭରା ଜହ୍ନ ପରା ରହୁଚ ଆକାଶେ ଟାକ
ମୋ ପ୍ରାଣଟି ଲଜେ ବୁଡ଼ାଅନା ମୋତେ ଡାକ ॥ ୦ ॥

ମନା ନ ମାନିଲେ ମୋର—ସତେ ଏକା ମନଗେ଼ର !
କହିବ ନାହିଁ ମୁଁ ଆଉ, ଯେତେ କଥା ଥିଲା ବାକି ।୧।
ତନୁ ପରଶି ମୋ ନ କର ଗୋ, ହରବର
ଛି ଛି, ଏ କି କଥା ହସ, ତୁମେ ଦରଦର
ଶୁଣୁଛନା ତୁମେ ବଉଳ ଗହଳେ ତାଗଟି ରହିଛି ଛକି ।୨।
ହଳେ, ପାଦେ ମୋର ଆଉ ହାତ,—
ଦେବ ନାହିଁଟି ମୋର ସପତ,
କାଳ-ଜହ୍ନ ତଳେ ତୁମେ ପ୍ରିୟ !
ଯେତେ ହଁଆ କିଆ ସାରିହଅ
ତୁମେ, ହେଲ ବଡ଼ ଅମାନିଆଁ
କବରୀରେ ଦେଉଚ ସାକ୍ଷୀ ।୩।

---

(୭୩)

—ଦ୍ରୁତ-ଏକତାଲୀ—

ବିଗତ ଯୌବନ କୁଞ୍ଜ ଭବନ ଗୋ !
ଭୃଙ୍ଗ ନକର ପରବାସୀ,
ନୀରବ କୋଇଲି ପଞ୍ଚମ-ବୋଲି ଗୋ !
କୁସୁମ କୋଠରେ ନିତି ବାସୀ ॥ ୧ ।
ନୀପ ମୂଳେ, ଘନ ନୀଳ ଜଳେ,
ତରଣୀ ଯାଉଚି ଭସି ଭସି,
ଲହରୀ ତଳେ—ଲୁଚକାଳି ଖେଳେ
କେତେ, ମଉନ ଚନ୍ଦ୍ର ଖସି ଖସି ।
ନୟନେ ସପନ ପରକାଶି । ୨ ।

---

(୭୪)

—ଝିଂଝଟି—

ଗରଜ ବାଦଲ ଝମ ଗରଜନେ
ଘନ ତିମିର ଘେରି ଆସେ ରେ ॥ ୦ ॥

ଲୁପ୍ତ ଶଶଧର, ଶୁପ୍ତ ତାରା
ଧ୍ୱସ୍ତ ରବିକର, ଧ୍ୱସ୍ତି ହାରା
ସାଗର ବନ ଗିରି ଗହନ ପ୍ରାନ୍ତର
ଥରଇ ଦାନବ ହାସେ ରେ । ୧ ।

ନାଚେ ଧୂମ କାଠ ବିକଟ ଯୋଗିନୀ
ପ୍ରଳୟ ତାଣ୍ଡବେ କମ୍ପେ ଧରଣୀ,
ଅଛି ଉକଟ ହାସରେ । ୨ ।

ଝାଞ୍ଜି ରବ ଶୁଭେ ଭବନେ ଭବନେ
ଜାଗେ ଶିହରଣ ଜୀବନେ ଜୀବନେ,
ଶାନ୍ତ ସୁଖ ଶିଖା, ନେଇଁକେ ଅପହରି
ତରୀ ଅଥଳ ଜଳେ ଭାସେ ରେ । ୩ ।

---

(୭୫)

— ଦାଦରା —

କୁଞ୍ଜ ଭରି କୁହୁ ଗାଏ କେ,
ସଞ୍ଜ ଘନ ଢେରି ଗୁଏ କେ ?
ଜୀବନେ, ଜୀବନେ, ପବନେ ପବନେ,
ସ୍ନେହ ଛୁଆଁ ମୋରେ ଦେଲା ସେ କେ ?

ଅଧା ଅଧା ହସ ତାର ଗୋ,
ଚହ୍ଲା ଚହ୍ଲା ସେ ତ ମୋର ଗୋ,
ସରମେ ମରମେ ପରଶେ ସତେ
ଫେଣ ଫେଣ କଥା କହେ କେ ?
ସପନର ଦେଖା ଦେଲା ସତେ କେ ? । ୧ ।
ଗନ୍ଧ ବହତାର ଅଙ୍ଗବାସେ
ଗେଲେ ଗେଲେ ଆସି ମୋର ତନୁ ପରଶେ
କୁହା କଥା ଅଧା ରଖି ଗୋ,
ଅନାଏଁ ତା ଲୁହ ଆଖି ଗୋ,
ଚଲାପଥେ କାହ୍ନିଁକ ମୋ ପାଦ ଅଟକେ
ଥରେ ଥରେ ଡାକେ ମୋତେ କେ ?
ଜୀବନେ, ଜୀବନେ, ପବନେ, ପବନେ,
ଥିଶ ଥିଶ ତନୁ ପରଶେ କେ ? । ୨ ।

— — —

(୭୭)

—ଦ୍ରୁତ-ଝିତାଲ—

ଭୁଲ କୁଞ୍ଜ ଦୁଆର, ଭୁଲଯା, ଭୁଲଯା,
ଭୁଲ ସ୍ନେହ ହସ, ଭୁଲ ଝଁସ ବାସ
ଭୁଲ ନୟନ କଥା ଭୁଲଯା — ॥ ୦ ॥
ଯେବେ ବଉଦ ହସି ତା ଓଢ଼ଣୀ ଟାଣେ
ଭୁନ କଥା କହେ ସେ, କାନେ କାନେ
ସେ କ ନାହିଁ ମନେ, ଫୁଲ ସଞ୍ଜେ ବନେ
ଆଜ ସେ ସ୍ନେହ—ବାଲ ଯା । ୧ ।

କମ ଆଖି ଧାରେ କଳାକାନ୍ତି ରେଖା
ଅଧା ଅଧର ଫିଟା, ତା ଅଫୁଟା ଭାଷା
ସବୁ ହେଲା ସିନା ଗୋ, ଖାଲି ଆଶାର ଆଶା
ତା ସପନ ଘରେ ନିତି ବାନ୍ଧୁ ବସା,
ଜାଗରେ ଭୁଲିଯା, ଭୁଲିଯା, ।୨।

— — —

(୬୭)

—ଦ୍ରୁତ-ଝିଂଟାଲ—

(ବନ୍ଧୁ ଆରେ) କଥା ନ ମାନେ, ମନା ନ ମାନେ,
ଫେରି ଫେରି ଯାଏ ସେ, ।।୦।।
ବୃନ୍ଦମୀ ବୃନ୍ଦାଁଳି ବୃନ୍ଦ ନିଶାରେ
ଠାରି ଠାରି ନୟନ ତା'ରି ଆଶାରେ,
ତା ଧାରା ଝରି ଆଖିରେ,
ଚେଷ୍ଟିର ମହୁଆ ହାରି—ଯାରି ହେଲାନ ଭରି
ଥିରି ଥିରି—
ମତି ହରାଇ, ଗୁଣ ଅରାଇ ଫେରି ଫେରି, ଯାଏ ସେ ।୧ ।
ରହି ରହି କୁହୁ ଗାଇ କୋଇଲି ତା ପଥ ଚାହିଁ,
ବିରହ ମାରି ଝୁରାଇ
ସାରା ରାତି ପୁହାଇ,
ମାନ ସାରି ମନ ମାରି
ଗଲା ତ ଫେରି, ସାଥୀରେ ଝୁରି,
ଫେରି ଫେରି, ଯାଏ ସେ । ୨ ।

———

(୭୮)

—ଦାଦରା—

**ଆ**ସ ଆସ ଋତୁରାଜ !
ନବ କଳରେ ଶିଖାଅ ଆଖି ଲାଜ, ଲାଜ । ୦ ।
ଶିରେ ଶିଖାଇ ଦଅ, ଜରି ଓଢ଼ଣା ଟେଣା
ଧୀରେ ନୟନ ଚାହିଁ ଶିଖୁ କଟାକ୍ଷ ହଣା
ବଧୂ-ମୁଖ ବଧୂ ଦରଶାଇ, ମାଜ ମାଜ । ୧
ଜାଣୁ ପାଇଛି ସେ ଯେ
ହେମ କମଳ କଳି
ଆଣୁ କୁସୁମ ଶେଯେ
ଡାକ ମଧୁପ ଅଳି,
ମାଖି ଅତର ଗନ୍ଧ, ନବୁ ସାଜ ସାଜ । ୨ ।

---

(୭୯)

—ଦାଦରା—

**ମ**ରମେ ଯଦି ଗୋ ବାଜେ
କର କଙ୍କଣ ବାଣୀ—
ସପନେ ଯଦି ଗୋ ରାଜେ
ଝଗଡ ମରମ ରାଣୀ । ୦ ।
ମଧୁ ଗନ୍ଧ ଯୁଗଳ ଧୂଅନା ପ୍ରିୟ !
ନୀରବ ନୟନ ଧାରେ
ଅନ୍ତର ତବ ଭରନା ଆଜି, ତପତ ବେଦନା ଭାରେ,
ଆକାଶେ ସେ ପରକାଶେ—ରାକା ଶଶୀ ଚନ୍ଦ୍ରପାଶେ
ଅଙ୍ଗ ମଦକ ତାର — ସମୀର ପରଶିଲାଣି । ୧ ।

ମଧୁ ମାସ କୋଇଲ କଣ୍ଠେ
ନଦୀ ତଟ ବାଲୁ ଉପକଣ୍ଠେ —
ଚେତନ ତାହାର ଗ୍ଲାଇ—ବାଲିଘର ବାନ୍ଧିଲାଣି
ଫେରି ନ ଚାହେଁ ସେ ବନ୍ଧୁ—ଜରମାଖି ଆଖି ପାଣି । ୨ ।

— — —

(୭୦)

—ଦ୍ରୁତ-ଟ୍ରିତାଳ—

ପ୍ରେମର ଦକ୍ଷିଣା ଫେରି ଆରେ ଆ'ରେ ॥୦॥
ଗୋପନ କଥା କାନେ କାନେ ତୁ ଶୁଣିଯା...
ଅଧା ରହିଲା ମୋର କଜଳଭ ଗୁନ୍ଥା ହାର
ଅଧା ମୋ କୁହା କଥା କଣ୍ଠେ ମୋ ରହିଲା ପର ।
ସେ ଦ୍ଵନ ଚନ୍ଦ୍ର ଥିଲା ସ୍ଵର୍ଣ୍ଣି (ଚେଇଁ) ଥିଲେ ଲକ୍ଷ ତାର
ଶୁଣିଲି କୁଞ୍ଜ କୋଣେ କୋଇଲି କୁହୁ ଡାକର,—
କେବେ ଆସିବୁ ସତେ ଜଣାଥେ ଏକା ଦୁଆରେ ?

— ——

(୭୧)

—ଦାଦରା—

ଵନ ଭୂଙ୍ଗିରେ, କହଯା ବନ୍ଧୁ କାନେ ଅରେ
ତା ଲାଗି ଏ ଗୃହ ଜଣି ଉଜାଗରେ ସାରେଁ ।୦।
ମୁଦିଲେ ନୟନ ପଲ ଧୁଅି ଯିବ ଦୂରେ
ତା ଛବି ରଖିଛୁ ଥାପି ଆଖିରେ ଆଖିରେ,
ମୁଦୁକହସା ତାର-ଗୁଡ଼ିଭ ଗାଉ, ମନ ତ ନଭୁଲେ ରେ ।୧।

ଏଇ ସ୍ନିଗ୍ଧ ଜ୍ୟୋସ୍ନାରେ ତା ଶିଶୁମୁଖ ଶିଖି
ଜାଗି ମୁଁ ଜଗିଛି କାଳେ ଯିବନି ବାହାର ।
ସେ ବଡ଼ ଦଗାଦାର-କଳଙ୍କରୁ-ଗ୍ରହଣେର ବୁଲେରେ ।୨।
ତା'ର ଲାଗି ଶୟନେ ମୁଁ ସପନେ ଡାକଇ
ମଳୟରେ ତା'ର ତନୁ ପରଶ ଲାଗଇ
କୁସୁମ ଅଙ୍ଗେ ତାର-ବାରବାର-ମହକ ମୁଁ ବାରେଁରେ ।୩।

(୭୨)

—ଦ୍ରୁତ-ଦିତାଳ—

ଆ ଶଶୀ-ଖେଳୁଁ ହୋରି
ଢୋର ସଙ୍ଗେ ରଙ୍ଗ ପିଚକାରୀ ।।୦।।
ଛପି ଛପି ରହନା ରେ ଚନ୍ଦ୍ର !
ମଧୁ ସମୀରଣ ବହେ ମନ୍ଦ
ଆକୁଳ କରେ ଫୁଲ ଗନ୍ଧ
ଦେବ ତାଳ ଅବର ଭରି ବାର(-ବାର) ।

(୭୩)

—ଖେମଟା—

ବସନ୍ତ ରେ, ବସନ୍ତ ରେ, ବସନ୍ତ ରେ,
ସରସ ପରଶେ ସ୍ନିଗ୍ଧ
ବଢ଼ଇଲ ତଳେ ଆନନ୍ଦ
ହସି ହସି ଲୁଚକାଳି ଖେଳେ-ମଧୁକରେ-ମଧୁଭରେ ।୦।

ବଣ ମଲ୍ଲୀ ତୋ ପଥ ଗୃହିଁ
ଚଲୁ ଅଳସେ ମାରୁଛୁ ହାଇ
ଥରେ, ନୟନ କୋଣେ ଅନାଇଁ—
ଚତୁର ! ଭୁନ ଭୁନ ଯାଅ କହି
ଜାଗି ଥରେ-ନଶୀଥରେ ।୧।

---

(୭୪)

—ଦ୍ରୁତ-ନିତାଳ—

ହେର, ସଞ୍ଜେ ଫୁଟେ ଫୁଲ କୁଞ୍ଜ ବନେ
ଘେର ଭୃଙ୍ଗ ବୁଲେ ଗେଲେ ଗୁଞ୍ଜରଣେ । ||୦||
ଫେର ଫେର ଗୃହିଁ ଗୃହିଁ ମଳୟ ଭୁଲେ,—
କୁସୁମ ଚା'ର ସିନା
ଭର ମଧୁ ହାସ ମୁଖେ, ଗୃନ୍ଧ ବସୁରେ
ଏକା ସେ ତାର କଣା
ନୁହେ ସେ କାର ଗୋ-ଗୃହେଁ ନହାର ଗୋ
ରହେ ଅନ୍ତର ମନ୍ତର ଥାପି ମନେ ।୧।
ଠାର ଠାର ଆଖି ସେ ଯେ ଗଗନ ମୁଖେ
ମଧୁ ମିଳନ ଖୋଜେ
ଘର ଯଉବନ ହର ନ ପାରେ ସହି,
ପଡ଼େ ଧୁମାଇଁ ଶେଜେ
ନଶି ସପନ ଗୋ-ଅନ୍ତ ଗୋପନେ
କହେ ମନ କଥା ନତ ନଇଜନେ ।୨।

---

(୨୫)

—ଖେମଟା—

ଯେବେ ମହୁଲ ବନେ
ମଧୁ ବସନ୍ତ ଦିନେ
ମଳୟ ଗୋ ଲୁଚି ଲୁଚି ଦେଲ ପରଶ
ତୁମେ ପ୍ରିୟ ଗୋ, ମୋର
ଖୋଲି ମନ ଦୁଆର
ମୁଖ—ଅଫୁଟା କଥା କହିଥିଲ ସରସ ॥୦॥

ବୈରୀ ବୃନ୍ଦାଣୀ ତଳେ ଥିଲା ମନ ଘୁମାଇଁ
ମରମ ସେ ଯେ କହେ କଥା ନ କହି,
ଗୁନ୍ଥା ମନ ମାଳା ଗୋ ଶୁଖି ଶୁଖୁ ଛ ନାହିଁ,
ପୋଡ଼ା ନୟନ ମୋର,
ଲୋଡ଼େ ସେଇ ପରଶ ।୧।

ଅରେ ଗିରି ଗରଭ ତେଜ ଝରିଲେ ଝର
ସଞ୍ଚି ଦେଇଛୁ ମୋର ମନ ମାଧବୀ ହାର
ଖାଲି ସପନ ସାର
ଫେରି ଦେବ କପର,
ଆଖି ମାର ମୋ ସାର ।୨।

(୭୬)

—ଦ୍ରୁତ-ତ୍ରିତାଲ—

ଅରୁଣ କିରଣ ଡାକେ,
ନୀଳ ଯବନିକା ଖୋଲ ହେ ଖୋଲ,
ଅସୀମ ଆକାଶ ଫାଙ୍କେ ॥୦॥
ଗୋପନେ କେ ସେ — ସପନେ ଆସେ
ଚରଣ ନୂପୁର ବାଜେନା,
ଛଇଳ ଆଖିର ଛଟକ ଦେଖାଇ
ଭ୍ରମର ଚିକୁର ସାଜେନା
ଏ ମଧୁ ମିଳନେ, ଦୂରେ ଦୂରେ ଥାଇ
ଆଖି ତଳେ ଆଖି ଲୁଚେ ।୧।
ସଙ୍ଗୀତରେ, ଇଙ୍ଗିତରେ
ଭଙ୍ଗୀ ଭରା ଆଜ, —
ଛନ୍ଦେ ଛନ୍ଦେ ମଧୁର ଗନ୍ଧେ
ମଳୟ ବନେ ବାଜ
ଅନ୍ତରେ କେ ମିଳନ ଗୀତ ଶୁଣାଏ
ଅଧୀର ହରିଣୀ ପୁଲକ ନୟନେ ଅନାଏଁ
ଏ ମଧୁ ପରଶ ଦେଲା କେ ? ।୧।

— — —

(୭୭)

—ଖେମଟା—

ପଡ଼େ ମନେ, ପଡ଼େ ମନେ ॥୦॥
ଏଇ ସେ ବେଳା,-ତପତ ଧୂଳା
ଏଇ ଝରଣାର କୂଳେ,

ଝାଇଁମରା ଝରା ଜୀବନଟା ସାରା
ସାଥୀହରା ସଉ ଝୁରେ,
ଆଚମ୍ବିତେ କାହୁଁ ବସନ୍ତ ଅଇଲା
ଥର ଥର ଥକା ତନୁରେ ଛୁଇଁଲା
ପୁଲକ ଉଠିଲା ଦେହ ସାରା ପରା
ମଦ ଭ ରା ଯଉବନେ—ଚେଇଲା ସତେ ଗୋପନେ ।୧।

---

(୭୮)

—ଖେମଟା—

ଛପି ଛପି ଯା' ନା, ଗୃଦ୍ଧନୀ
ପିଆସୀ ଆଖି ମୋର, ଧୁମେ ତୁ ମଜ୍ଜନା ।
ମହୁଆ ମଳୟୁ ଆସେ
ଏକାକୀ ଝୁରେ କା ଆଶେ
ଆକୁଳ ମୋ କାନ ପାଶେ, ବଇଁଶୀ ବଜା ନା ।୧।
ନାହିଁ ରୂପ ନାହିଁ ଛନ୍ଦ
ନାହିଁ ରେ କୁସୁମେ ଗନ୍ଧ,
ନ ଜାଣି ଏ ଆଖି ଅନ୍ଧ
ରୂପ ସରଜା ନାଁ । ।୨।

---

(୭୯)

—ଦାଦରା—

ସ୍ୱପ୍ନ ତୁମେ ଗୋ, ତିମିର ଦୁଆର
ଆଲୋକ ଆସିଲ ଆଜ,
ପଥ ଭୁଲି କିଏ ଶିଶୁ ଚନ୍ଦ୍ରମା ବସାଇଲା ଘୁମ୍ପା-ବାଜ ॥୦॥

ଯୁଗାନ୍ତରର ଅନ୍ତର କଥା
ରୂପଧର ସତେ ଅଙ୍କୁରଲା,
ପ୍ରଭଞ୍ଜନର ସିଞ୍ଜିନ ଛଳେ
ମଳୟୁ ସେ କୁହୁ ଝଙ୍କାରଲା,
ଫୁଲବନ ଝରି ପାଖୁଡ଼ା ସୁପାତି ପାତି
କୋମଳ ଶେଯରେ ପଡୁଛି ପୁହାଇ ରାତି
କୋଇଲର କୁହୁକୁଳେ –
ବଜନ ମାଧବୀ ମୂଳେ
କଏ ସେ ଆସିଛି ଅତିଥି ଗୋ, କହ
ଚଉଦିଗ ଉଠେ ସାଜ ।

---

(୮୦)

—କହରବା—

ଫୁଲବନ ଭୂଲକୁ ଯା'ରେ ମଧୁପିଆ
ନାହିଁ ତୋ ସୁର ଭୂଲ ସାଥୀ

ଅନୁସର ତୋ ରାଧା
ଯାଗି ଜୀବନ ସାରା
ଫାଟିଛି ଅଧା—ଭରା ଛାତି
ନାହିଁ ଆଜ ରେ ଅନା
ଦୂର ପରଦେଶୀ ତାର ସେ ମାଧବୀ ସାଥି ।୧।

ବଅମନ ତାର ତୁ,
ଦେଲୁ ଦୂରେ ଫିଙ୍ଗି
ଆନ-ରସେ ଥାଇ ମାତି,
ଆଜ ନୟନେ ମିଛେ
ଭରୁ ସିନା ବାରି
ଜାଳ ଶମଶାନେ ବସି ।୨।

(୮୧)

—ଦ୍ରୁତ-ତ୍ରିତାଳ—

ସଘନ ସିନ୍ଧୁ ଗରଜେ,
ଫେନ ମୁକୁଟ ଊର୍ମିର ଶିରେ ସାଜେ ॥୦॥
ନାହିଁ ତପନ ନାହିଁ ତାରକାର ଚନ୍ଦ୍ର
ପ୍ରଭଞ୍ଜନର ଗରଜ ଶୁଭଇ ମନ୍ଦ୍ର
ତମିର ମଝିରେ ବମ୍ ବମ୍
ହର ଡମ୍ବରୁ ବାଜେ । ।୧।
ନାହିଁ କୂଳ ଥଳ ଅସୀମ ସିନ୍ଧୁ
ନାହିଁ ଗଗନରେ ଆଲୋକ ବିନ୍ଦୁ
ଜନମ ମରଣ ପ୍ରଳୟ ଦୁଆରେ
ମୁଖ ଢାଙ୍କିଲି ଲାଜେ ।୨।

(୮୨)

—ଖେମଟା—

ପୁଣି ଆସିଛି ଫେରି
ଉଷା-ହସା ସେଇ ଫଗୁଆ ପାହାନ୍ତି
ମେଘ କଳା କାନ୍ତି ଶରି ॥୦॥

ପରଦେଶୀ ମୋହ ଓଢ଼ଣା ତଳରେ
ହାତ ଗୋଡ଼ ଛନ୍ଦା ଟାଣୁଆ ବେଢ଼ରେ
ମାଆ ପାଆ ତଳେ ଜୁହାରିବା ପାଇଁ
ମନ ଯାଉଥିଲା ଡରି,
ଶିକୁଳି ମୁକୁଳା ସେ ମଧୁ ଲଗନ
ସ୍ମୃତି ଦିଏ ହେତୁ କରି । ।୧।

ଆଜିର ସୂର୍ଯ୍ୟେ ତପନ ନବୀନ
ଆଜିର ଜୀବନେ ଚେତନ ନବୀନ
ଆଜିର ଗଗନେ ସ୍ୱାଧୀନ ପବନ
ଭରିତିଆ ଉଡ଼ିବୁଲି,—
ମୁକତି ଗୀତ ସେ ଗାଇ ନାଚିଥିଲା
ଦିଗ ଦିଗଙ୍ଗନା ଭରି ।୨।

ସ୍ୱାଗତ ହେ ଚିର ବାଞ୍ଛିତ ଅତିଥି !
ସ୍ୱାଧୀନ ଭାରତ ଗାଏ ଯଶ ନିତି
ଯାବତ ଧରାରେ ଥିବ ଦିବାରାତି
ଅପାସୋରା ରୂପ ଶିଖା
ପନ୍ଦର ଅଗଷ୍ଟ ଏ ଭାରତ ଇଷ୍ଟ
ଆସ ଯୁଗ ଯୁଗ ଧରି
ପ୍ରଣତି ଘେନ ସବୁରି ।୩।

(୮୩)

—ଦାଦରା—

ଆଜ, ବସନ୍ତ ଯାଇଚ ଚାଲି
ମଉଳା ବଉଳ ରସାଳ ତଳରେ ।୦।
ଶେଯ ବଛୁଇଛୁ ଖାଲି
କୁସୁମ କୁମାରୀ ଝୁରି ଝରି ପଡ଼େ
ମଳୟରେ ଅନୁସରି,
ଚାହେଁ କେତେ ଫେରି ଫେରି
ସରମ ଦହଇ ମରମ ତାର ଗୋ
ସାଥୀହରା ହରିଣୀରା ।୧।
କୋଇଲି ନାହିଁ ତ କୁଞ୍ଜେ,
ତାରା ଭରା ଫୁଲ ସଞ୍ଜେ
ବିଜନ ମହୁଆ ଢୁଇଁ ଦେଉନାହିଁ
ସପନ ରାଜ କୁମାରୀ,
କୁହୁ ଚମକରେ ଚମ୍ପୁ ଜାଲୁ ନାହିଁ
ସୁକୁମାରୀ ଥରି ଥରି
ଯାଇଚ ଯେ ଦିନ, ସତେ ବାହୁଡ଼ିବ
ଆଉ କି ଜୀବନେ ଫେରି ? ।୨।

(୮୪)

—କାହାରବା—

(ଆଜ) ସେହି ବୃନ୍ଦ ହସେ ପ୍ରିୟ
ଗଗନେ ନୟନ ଦିଅ
ସଚଳ ବଉଦ ମାଳା, ଧୀରେ ଗୁମରି ଢାଳନ୍ତି
ଦେଖିଛୁ ତ ତାରା ସଖୀ, ସଜମିଛ ବାରି ନିଅ ।୦।

ଅପଘନୁ ଝରୁଥିଲା ସ୍ୱେଦ ବାର
ଘଣଟେ ନଶୀଥେ ଦେଇଛ ନବାର
ଉଡ଼ି ପାଖୁଡ଼ାଟି ଅଙ୍ଗେ ଗଲା ଜଡ଼ି
ମନେ ମୋ ଆସିଲା ଭୟ,
ହେବ ବୋଲି ପରାଜୟ
ତନୁ ପରଶିଲି—ପାଖୁଡ଼ା ଫିଙ୍ଗିଲି
ହେଲା ପରା ନରଭୟ । ୧ ।
ପାଶୋର ଦେଲ କ ସେ ରଜମା ସତେ
ସେହ୍ନ ଲୁଚକାଳ ଖେଳ,
ତାର ଫୁଲ ଭର, ଘଣଟ ତଳରେ
ନୟନେ ନୟନ ମେଳ
କାନ କୁହା ଛଳେ ଛୁଇଁଛକ ନାହିଁ ଗଣ୍ଡ ମୋ ସତ କହ । ୨ ।
ମଜନେ ନୟନେ ଭସି ଭସି ଆସେ
ସେ ବନର ସ୍ମୃତି ସୁଅ
ସେ ଗ୍ରନ୍ଥ ସ୍ୱମର, ପୂଜା ଫୁଲ ତାଳେ
ଯେତେଦୂରେ ଥିଲେ ଥାଅ । ୩ ।

---

(୮୫)

—ଦ୍ରୁତ ଏକତାଲୀ—

ଗା' ନା ଫେର ତୁ କୋଇଲ !
କୁହୁ କୁହୁ ଗା' ନା ରେ,
ଝୁରଣା ନଈନା ଝୁରେ
ମନ ଗ୍ଲେଷ ନା ରେ ॥୦॥

ମାନସୀ ଗୃହବାସୀ କୁଞ୍ଜେ ଘୁମାଏଁ,
ଜାଗରେ ଯାମିନୀ ଝରଦ୍ଧ ବତାଏ,
କାନେ ଶୁଣାନା ପରଦେଶୀ ନାଁରେ । ୧ ।
ଘାରେ ମରମେ—ସାରେ ସରମେ
କାନନେ କାନନେ କୁସୁମେ ମତାଏ
ପାଶୋରା ମନେ ତା ବନ୍ଧୁଆ ଚେତାଏ
ମାନେ ସରେ ସେ ନବ ଜୱାନାରେ । ୨ ।



(୮୭)

—ଦାଦରା—

ଝିଁରଲ ନଆଳ ଝିଁରଲନ ଆଳୀ
ତା ଶିଷ ସଉଲ ସିନା,
ପଞ୍ଚ ଦପାଳୀ-ସଞ୍ଜରୁ ଜାଳ
ଗୃହିଁ ବସିଛୁ ନଷାନା । ୦ ।
ବଜାଏ ବଂଶୀ ଯମୁନା ତଟେ କେ
ଚନ୍ଦ୍ର ଭୁଲେ ହସେ କୁଞ୍ଜ ପଟେ କେ
ତା' ଧିଆନେ ଏ ମନ ଅଟକେ
ସଜନୀ ସରେ ତା ବନାରେ । ୧ ।
ଆଣ ଭର ପ୍ରେମ ଧୀପ ଚେଜାଇ
ସପନେ ସୁନ୍ଦର ଛବ ରଞ୍ଜାଇ,
ନୟନେ ଗୃହଣୀ ରଙ୍ଗ ସଜାଇ ସେ
ରଜନୀ ସରେ ତା ବନାରେ । ୨ ।



(୮୭)

—କାହାରବା—

ଏଇ ତ ହସୁଛି ଚନ୍ଦ,
ଆସେ ମଳୟର ଗନ୍ଧ
ଅନ୍ଧ ହେବକି ଅଳି, ନ ହସିବ ନବ କଳି ॥୦॥
ଚେଡିକି ଚପଳା ଲେଖା · ନ ଦେବ ବରଷା ଦେଖା
ଚାତକ ସତେ କି ଏକା—ମରିବ ଗୋ ଝୁରି ଝୁରି ? ।୧।
ଏଇ ଯେ ମାଧବୀ ଫୁଲ — ମଉଳି ନାହିଁ ମୁକୁଳ,
ଅକାଳେ ଯିବ କି ଝରି—ଆଶା ବାଳିବନ୍ଧ ସରି ।୨।

———

(୮୮)

—କାହାରବା—

ଝରା ଫୁଲେ, ଭରା ହାସ, ଥାଏ କି ରେ ମାନିନୀ !
ସାରା ନିଶି, ସାରା ହେଳି, ଝୁରି ତାରା ଚନ୍ଦ୍ରମା ॥୦॥
ଏଇ ଯେ କୋଇଲି ଗଲା କୁହୁକୁ ଶୁଣାଇ ରେ
ଏଇ ଯେ ଛଇଳୀ ମଲ୍ଲୀ ଗଲା ଫେରି ଚାହିଁ ରେ,
ଆଖି କୋଣେ, ଛୁରୀ ମାରି ମଉଳିଲା କାମିନୀ
ଝରେ ଫୁଲ କାମିନୀ ।୧।

———

(୮୯)

—ଖେମଟା—

ଅଭିସାରିକା ! ମାନିନୀ ଗୋ, ଚଳ ଚଞ୍ଚଳ
ଯାଏ ଯାମିନୀ
ଗୃହିଣୀ ଝୁରିଲାନ, ଝୁରିଅଛେ କାମିନୀ ॥୦॥

ଉଚ୍ଛୁଳା ମନ କଥା କଏ ବସି
ଯମୁନା ତଟ ପଟେ ହୁଏ ଘୋଷି,
ମୋହନ ମୁରଲୀ ରେ ତୋ ନାମ ଶୁଭିଲାନ ।୧।

ନୟନ, ତାର ଭର ରଜନୀ ରେ
ତୋ ପଥ ଗୃହିଁ ଜାଗେ, ସଜନୀରେ
ତୋ ଶିଖା, ଅନୁସରି, ମଳୟ ବହିଲାନ ।୨।

---

(୯୦)

—କହରବା—

ମଧୁ ସଞ୍ଜରେ ଭ୍ରମର ଗୁଞ୍ଜନ ଦେ
କୁନ୍ଦ କୁଞ୍ଜରେ ଚନ୍ଦ୍ରିକା ଉଦେ—
ସଞ୍ଜରେ ଭ୍ରମର ଗୁଞ୍ଜନ ଦେ ।
ନାହିଁ ସେ ଫୁଲେ ଦର ଦର ହାସ,
ନାହିଁ ଗନ୍ଧ ବିକାଶ—
ମଦାଳସ ନୟନେ, ଫୁଲ ହସ ବଦନେ
ନାହିଁ ତ ରଙ୍ଗ ବିଳାସ,

ବନ୍ଧୁଆ, ପ୍ରୀତି ଅଞ୍ଜନ ଦେ, ଦେ,
ମଧୁ ସଞ୍ଚରେ ଭ୍ରମର ଗୁଞ୍ଜନ ଦେ ।୧।
ବଉଦ ଫୁକାଇ, ଫୁଲ ବନସ୍ତୁରୀ,
କୁହୁକୁ ଉଛାଇ-ଭରେ ମନ ଘରି,
ବଢଯାଏ ସତେ ଗୋ, ଯୁବନ୍ତୀ ରଜନୀ
ଅନୁରାଗ ରଞ୍ଜନ ଦେ, ଦେ, ।୧।

— — —

(୯୧)

—କହରବା—

ଯାମିନୀ ଯାଇ ସା ନା, ଏ ଯାମିନୀ ପୂରାନା ।୦
ଶଶୀ ହସା ଜଣୀଥେ—ଯେବେ କାନନ ପଥେ
ନଅଲୀ ଘୁମ ଘୋରେ ଘୁମାଏ, ତୁ ଜଗାନା ।୧।
ଆଶା ସାଗର—ମାରେ ଛାୟା ଭଗ୍ନ ନଶିରେ
ଯେବେ ଫୁଟିଛୁ ଫୁଲ, ଧାଇଁ ଆଉ ବୁହାନା ।୨।
ଏ ଯେ ତୋ ଅଙ୍କ ଲେଖା—କଳା କଳଙ୍କ ରେଖା
ଆଉ ଲଜାନା ଆଉ, ସେ ମୋ ଛବିଟି ସିନା ।୩।

— ———

(୯୨)

—ଦାଦରା—

ଉନ୍ଦା ହର ଆଖି, ଝରେ ବାର ଧାର
(ଖାଲି) ଆଶା ଆଶା ଦେଲୁ ସେଇ
ଏକା ଏକା ତାର ।୦।

ସଞ୍ଜ ଆସେ ନିତି ନିତି ସେ ତ ଆସେନା,
କୁଞ୍ଜ ଭରେ ଚନ୍ଦ୍ରମଲ୍ଲୀ, ବାସି ବାସେନା
ସ୍ୱପ୍ନ ସେ ଯେ—ସ୍ୱପ୍ନ ସାର । ୧ ।
ଛାୟା ମେଘେ, ଚନ୍ଦ୍ରମା ସେ ଦିଶି ଦିଶେନା,
ମାୟା ଘେର, କାୟା ତାର ଭାସି ଭାସେନା
ଛନ୍ଦ ଛଡ଼ା, ପଥଭୁଲା, ଫୁଲ ଚୋର ସେ
ଅନ୍ଧକାରେ ନିତି ସେ ଗୋ ଗନ୍ଧ ପରଶେ
ସ୍ୱପ୍ନ ସେ ଯେ, ସ୍ୱପ୍ନ ସାର । ୨ ।

(୯୩)

—ରୂପକ—

ଆସିଛି ପଦ୍ମ ଭ୍ରମର, କୁଞ୍ଜ ଦୁଆରେ
ରୁଷନା ଗୋ, ଅଭିମାନେ ନୟନ ଧାରେ ।।୦।।
ଝର ବନ ଫୁଲେ—ପଦ୍ମ ସେ ଭୁଲେ
ଉଡ଼ାନା ଅତିଥିରେ ନବ ନବୀନା ରେ । ୧ ।
କେ ଜାଣି କ ଲାଗି—ସାରା ନିଶ ଜାଗି
ଆସିଛି ନ ବୁଝି ଗୋ, କରନା ମନା ରେ । ୨ ।

(୯୪)

—କହରବା—

ଶେଫାଳୀ ବନ୍ଧୁ ଫୁଟିଛି ସଖି, ରଜନୀ ଶେଷେ,
ଗନ୍ଧ ହର, ପରାଗ ଝର, ନଲାଜ ବେଶେ ।।୦।।

ନଶିଟି ସାଗ୍ର ବରଷ୍ମ କବ
ସପନେ ଏଣେ ଲେଖେ ତା ଛବ
ମିଳନ ରଙ୍ଗ, ନୟୂନ ମାରେ ଗୋଳୁଛି ସେ ।୧।

ଷୀଣ କଣ୍ଠେ, ଶୁଷ୍କ ଭାଷା, ଶୁପ୍ତ ପ୍ରାଣେ ଲୁପ୍ତ ଆଶା
ହଜୁଛି ମାଳା, ନାହିଁ ତ ତାର, ସବ୍ଗ ଲେଶେ ।୨।

---

(୯୫)

—ଦାଦରା—

ଗୋଧୂଳି ଗଗନ ତଳ,
ପୂର୍ବାଶା ଆସିବ କହିଥିଲା କାହିଁ, ଚାହିଁ ଚାହିଁ ଗଲା ବେଳ ॥୦॥

ଭୁଲିଲା କି ସେ ଗୋ ମୋତେ—ସେ ଦିନର ସବୁ ସତେ
ଶତେକ ଯୁଗର, ଉଚ୍ଛୁଳା ମରମ—ଶ୍ୱେର ମନ କଥା ଯେତେ
ଛଳ ଛଳ—ଛଳ ଛଳ ଆଖି ଜଳ ।୧।

କୁଞ୍ଜ ବଉଦ ତଳ-ଭରିଲା କୁସୁମ ଦଳ
ଶେଯ ଗୁଛିଲାଣି, ମଳୟ ମରୁତ, ସିଞ୍ଚି ମହୁଆ ଜଳ
ଲୁଚି ଲୁଚି ଆସେ ଖରା—ଚାହିଁବ ପହିଲ ତରା,
ଅନ୍ଧାରେ ଆଜ କି ଆସିବ ସତେ ସେ, ସେ ତ ପରଘରବାସୀ
ନିରଜନ— ନିରଜନ ବନ ଥଳ ।୨।

---

(୯୬)

—ଦାଦରା—

ଉଠ ଉଠ, ଜାଗ ଜାଗ !
ଏ ମରତ ନୁହେ ତୋର କୁସୁମ ଶୟନ ॥୦॥
ଜାଗେ ନାହି ହେମ-ଛବି ରବି,
ନିଶା ଉଷା, ନାହି ଦେଖେ କବି,
ଏ ଜୀବନ ନୁହେ ସୁଖର ସପନ
ଏ ଜୀବନ ଖାଲି ସଂଗ୍ରାମ ।୧।
ସମର ମଝିରେ ଜନମ ତୋହର
ସମର ମଝିରେ ଜୀବନ ତୋହର,
ସମର ଶେଷରେ ଜାଣିବ ସେଦିନ
ଆସିବ ସେପାରି ଆହ୍ୱାନ ।୨।

———

(୯୭)

—କାହାରବା—

ସୁନ୍ଦର ଏଇ ଜୀବନ, ଜନମ
ସୁନ୍ଦର ଏଇ ଧରା,
ସୁନ୍ଦର ଏଇ ବନ ଝରା ଫୁଲ,
ସୁନ୍ଦର ଶଶୀ ତାରା ॥୦॥
ସୁନ୍ଦର ଏଇ ମଳୟ ମଝିରେ
ସୁନ୍ଦର ଫୁଲ ଝରା,

ସୁନ୍ଦର ଏଇ ମଧୁପ କଣ୍ଠ
ସୁନ୍ଦର ସୁର ଭରା
ସୁନ୍ଦର ମଣେ ଭୁବନ ମାନବ
ପାଶୋରେ ମରଣ ଜରା ।୧।

———

(୯୮)

—ଦାଦରା—

କା' ଲାଗି ସାଜନ୍ତୁ ସତେ ପୂଜାର ଏ ଡାଲି
ଦରହାସ ମଖା ମୁଖେ ଅଭିମାନ ବୋଳି ॥ ॥୦॥
କା ଲାଗିରେ ଚରଚର
କଏ ଚୋ ରୂପ ନାଗର,
ସେ କି ବୁଝେ ସତେ ତୋ ଅନ୍ତର
ଫୁଟୁ ଆପେ ଝରୁ ଆପେ କଳି
ନଶି ସାରା ଉଜାଗରେ ସଜ ହେଉ ଅଭିସାରେ
ଚୋ ମଦକ ତୋହ ଲାଗି ପିନା ବଣମଲ୍ଲୀ
ଡାକ ଡାକ ବାହୁଡ଼ିଲା ମିଛେ ପରା ଅଳି ।୧।

———

(୯୯)

—ଅଧା—

ଜାଗି ଯାମିମା ଯାଏ ପାହ୍ମ
ରସାଳ କୁଞ୍ଜେ କରେ କୋକିଳଟା ଟାହ୍ମ ॥୦॥

ହେଲାରେ ମୁଁ ହେଲି ଠେଲି
ଆସିଥିଲ ପାଶେ ଅଳି,
ଆସିଚ ମଳୟ ମୁଁ ସେ ଠାବ ଦେଇ ନାହିଁ
ମନର ନାଗର ଅରେ ନ ଗଲ ତ ଚାହିଁ ।୧।
ବ୍ୟର୍ଥେ ଗଲା ଯୌବନ,
ବେଶ ବାସ ଅକାରଣ
ଖୋଜୁଛ ସଜନୀ ମୋର ମରଣ ଗୋ କାହିଁ ।୨।

---

(୧୦୦)

—ଦେଶ-ବିଭାଲ—

ସଫଳ କରନା, ପରାଣ ସାଥୀ ଗୋ,
ଚନ୍ଦ୍ର ହାସ ଭରା ମିଳନ ରାତି
ଏଇ ଡାକେ ପ୍ରିୟ ପିୟାସୀ ଚକୋର
ଏଇ ଶୁଣେ ପରା ପରାଣ ଗୀତି ।।୦।।
ମଧୁର ମଳୟ ଫୁଲ ମୁଖ ଚୁମ୍ବେ
ଦୋହଲାଇ ନବ କେଶର ପନ୍ତି
ମଧୁ ପରଶନ ଦିଅ ପ୍ରିୟ ମୋର
ଆସ ଗୋ ସୋହାଗେ ମାତି ।୧।

---

(୧୦୧)

—ଖେମଟା—

ସରଳା ପଲ୍ଲୀବାଳା ସରସ ନୟନେ ଚାହିଁ
ଚପଳ ଭଙ୍ଗୀ ତୋର ସଙ୍ଗୀରେ ଦେବ ଦେଖାଇ ।।୦।।

ଉଡ଼ୁ ଥିବେ ସୁଖେ ବକମାଳା
ଗଣୁ ଥିବେ ହସି ନବବାଳା,
ଶିଖି ନାହିଁ ଜନମ ସାରା
ଖେଳ କଟାକ୍ଷ ଭୁଲେ ସେ
ତରଳ ଭ୍ରୂରୁ ନଗ୍ନଇ • ।୧।

ଶୁଣି ତୋର ଗରଜନ ଘୋର
ଗୁଡ଼ୁ ଛନକ ଉଠିବ ତାର
ଭସ୍ମୁ ଚକିତା ଲଲନାବର,
ଜାଳ ପ୍ରିୟୁ ଅଙ୍ଗେ ଦେବ ତନୁଟି ମିଶାଇ ।୨।

———

(୧୦୨)

—ମହ୍ଲାର-ଝିଭାଳ—

ବାଦଳ ରେ ଆସ ସଘନ ସରସ ମାର ଧାରେ ॥ ୦ ॥
ଗୃହକା ରଜ୍ଜୁଚ ପଥ ଗ୍ନହିଁ
କୁନ୍ଦ ଦଳ ଶେଯ ବସ୍ତୁଇ
ଶୁଣ ଝିଙ୍କାଶ୍ମ ଝୁରେ ପଥ ଗାଇ ଗାଇ ଶରଧାରେ । ୧ ।
ଦରହାସେ ଡାକେ ବଣମଲ୍ଲୀ
ଷୁଲ ଲାଜ ଲାଜ ଭ୍ରୂରୁବଲ୍ଲୀ
ପୁଣି ଶିହରଣ ଜାଗେ କଦମ୍ବ ବନେ ବସୁଧା ରେ । ୨ ।

———

(୧୦୩)

— ଆଠତାଲି —

ସଖି ଲୋ ! ଏତ ନୁହେଁ ନବ ନୀଳଘନ
ସ୍ଫଟିକ ଶିଳାରେ କି ଏ ନବୀନା କିଶୋରୀ —
ଖଙ୍ଗେ ବସି ଯତନରେ ମନ ଦେନା କରି
ସତେ କାଳିଆ ଅଞ୍ଜନ
ଦଳିବ ସେ ଯୁବା ଜନ ମନ ।୧।

ନୋହିଲେ ସେ ହେବ ଗୋରି ତନୁ ଅଭିରାମ
ଘନ ନୀଳ ଓଢ଼ଣୀ ତା କଣ୍ଠେ କି ଶୋଭନ
ସତେ ଏ ମଧୁ ମିଳନ ଗୋ
ଶୋଭି ଶିରି ଗରବ ଗଞ୍ଜନ ।୨।

---

(୧୦୪)

—କାହାରବା—

ନବଘନ, ମିନତି ଘେନ ।
ବୋଲାଉଛୁ ତୁହି ପରା ଜଗତ—ଜୀବନ ॥ ୦ ॥

ବିରହୀ ମୁଁ ଅତି ଦୀନ ପଶୁଛି ଶରଣ,
ଘେନା କର ବାରେ କରେ ଅରଚନା
ବିଜନ ଏ ପରଦେଶେ ଏକା ଛୋଡ଼ି ବିନା
ନାହିଁ କେହି ସାହା ମୋର ମୁଁ ତୋ ବନ୍ଧୁଜନ । ୧ ।

ଏକାକିନୀ କୁତୁକିନୀ ନବୀନା ତରୁଣୀ
ଝୁରି ଝୁରି ମୋହ ବନା ସରି ତ ଯିବନି,
କହିବୁ ପ୍ରିୟାରେ ମୋର ମରମ ବଚନ
ଗବାକ୍ଷ ପଞ୍ଜରୁ ଲଭି ତୋହ ଦରଶନ
ଗ୍ଡର ମଣୁଥିବ ନଷ୍ଟେ ସାର ତା ଜୀବନ
କହିବୁ ତା ବନା ମୋର ନ ସରଇ ଦିନ । ୨ ।

---

(୧୦୫)

—କହରବା—

ଜାଗି ଯାମିନୀ ପାହେ
ନୟନ ପଣତେ ନୀର ନିରତ ନୀରବେ ବହେ ॥ ୦॥
ଏଇ ତ ବରଷେ ଘନ, ପ୍ରଥମ ଅଷାଢ଼େ
ବଳାକା ମାଳିକା ଖେଳେ ବଉଦ ଉହାଡ଼େ
ଆଶାପ୍ଲୀ ଗୃହକା, ପ୍ରିୟ ମିଳନ ମଙ୍ଗଳ ଗାଏ । ୧ ।
ସରସ ପରଶ ତୋର କଦମ୍ବରେ ବାଜେ
ତର ପ୍ରିୟ-ବରହିଣୀ ଦମ୍ଭ ଯିବ ଲାଜେ
ଶିହର ଅନାଇଁ ଥିବ କୋରକତ ଦେହେ । ୨ ।

---

(୧୦୬)

—ଦାଦରା—

**କେ ସଖୀ ଗୋପନେ ଗାଏ, କୁହୁ କୁହୁ, କୁହୁ, କୁହୁ**
**ମରମ ପରଶି ଗୋ, ସରମେ ମନ ଭୁଲାଏ ॥ ୦ ॥**

ଚତୁର ମଳୟ ରେଳ—ମଦନ ହଜାଏ ମୋର,
ଚରଣେ ଚରଣ ଲଗେ ଚଲେ ସରଣୀ ହୁଡ଼ାଏ । ୧ ।
ପଲାଶ ରଙ୍ଗ କଟାକ୍ଷ—ନେକତକୀ କମ କଲୁଷ
ଉଦାସ ହିଳ ହୋଡ଼ି, ବିଯୋଗୀ ମନ ହଜାଏ । ୨ ।

---

(୧୦୭)

—କହରବା—

ଆସ ବସନ୍ତ, ବନ୍ଧୁ ବସନ୍ତ ନବ ମଳୟ ସାଥୀ
ଆସ ମନଚୋର, ଆସ ପ୍ରିୟ ମୋର,
କୋଇଲି କୁହୁରେ ମାତି ॥ ୦ ॥
ବଜାଅ ବନ୍ଧୁ ସେ ମୋହନ ମୁରଲୀ
ଯାଇଛୁ ତ, ଯାଏଁ ଜାତି ମତି ଭୁଲି
ଚରଣ ତଳରେ ଆଜ ଏ ନଶୋଣ
ଅନୁସର ବନ ବୀଥି । ୧ ।

---

(୧୦୮)

—କହରବା—

ଏଇତ ହସୁଚି ଗନ୍ଧ ମଳୟରେ ଝୁଲି ଫୁଲ
ଅନ୍ଧ ହେବ କି ଅଳି, ନ ହସିବ ନବ କଳି ? ॥୦॥
ଚେତିବ ଚପଳା ଲେଖା—ନ ଦେବ ବରଷା ଦେଖା
ଗୀତକ ସତେ କି ଏକା
ମରିବ ଗୋ ଝୁରି ଝୁରି ।୧।

ଏଇ ସେ ମାଧବୀ ଫୁଲ ମଉଳ ନାହିଁ ମୁକୁଳ
ଅକାଳେ ବ ଯିବ ଝୁଲି
ଆଶା ବାଲି-ବନ୍ଧ ସର ।୨।

———

(୧୦୯)

—ଆଠତାଳୀ—

ମହୁଆ ବନ୍ଧେ ଗୋ, କାହିଁ କୋଇଲି
ଶୁଭୁନା ଛ ସଜନୀ ବନ ଫୁଲ ଭବନେ
ମତ୍ତ ଭୃଙ୍ଗ କୁହୁକୁ ବୋଲି, ମଧୁ ମୁରଲୀ ॥୦॥
ବଫଳ ଯାଏ ଗୋ ରସିଆ ଶୃଙ୍ଗନୀ
ନୀରବ ହେଲା ଚ ଚକୋରୀ ମାନନୀ,
କୁଳ ମାନ ଭୁଲି ସଖି ! ଯା ହୁଡ଼ିଲି
କ କଲି, କ କଲି, ସରମେ ବୁଡ଼ିଲି ।୧।
ବକୁଳ ମୁକୁଳ ଧରି ଖର ଗ୍ରୀଷ୍ମ
ଡରଏ ସଖି ରେ ମୋତେ ଫଗୁ ଖାଲି,
ଫଲଣ କଟାକ୍ଷ—ଆଏଁ ମୁଁ ଜୁହାର
ସତେ କ, ମତେ କ, ଛଳେ ବଣମଲ୍ଲୀ ।୨।
ଆଶାରେ ଆଶାରେ ସରିଲି ସଖୀ ମୁଁ
କୁସୁମେ ଭ୍ରମର ମିଳନ ଦେଖି ମୁଁ
ଅଭାଗୀ ମୋ ସର କାହିଁ ଛନପୁଷ୍ପ
ନାହିଁ କ, ନାହିଁ ତ, ସତେ ମୁଁ ଜାଣିଛି ।୩।

———

(୧୧୦)

—କହରବା—

ସପନ ନୟନେ ଆସେ ନିତି ସେ ତ
ପବନେ ତା’ ତନୁ ମହକ ବାସେ,
ଘନ ତାସ ଘେରା ଗଗନ ମଝିରେ
ଚାନ୍ଦ ମୁଖେ ସେଇ ଛବିଟି ହସେ ।୦।
କାନେ ଶୁଣେ ତାର ଅଫୁଟା ଘରଣ୍ଟ,
ରୁଆଁ ତା ଲାଗି ରେ ଛନକାଏ ଗୁଣ୍ଡ,
ଆସ ବୋଲି ବେନି କର ପ୍ରସାରିଲେ—
କାୟା ନାହିଁ ପରକାଶେ
ତପତ ନୀର ଏ ଅଞ୍ଜଳି ଭରେ
ମରମ ଭରି ନିରାଶେ ।୧।

(୧୧୧)

—ଦ୍ରୁତ-ତ୍ରିତାଳ—

ଗୁଣୁ ଗୁଣୁ ଗୁଣୁ ଗୁଣୁ ଭ୍ରମରୀ ଗୁଞ୍ଜେ,
କୁଞ୍ଜ କୁସୁମ ଦଳ ଘେରି,
ଦୂର ଗଗନ ଭରି ଚାନ୍ଦ ନିରେଖି
ଝୁରି ମରେ ତ ଚକୋରୀ (ଝୁରି) ।୦।
ମାନ ବରଜ ଅବଗୁଣ୍ଠନ ଖୋଲି ଧନୀ !
ଉପଗତ ଦ୍ୱାରେ ଭିଖାରି,
ବନ୍ଧନ କରି ତୁ, ଅନ୍ଧ କରି ନୟନ
ରେଣୁ ପରାଗ ବିଥୁରି ।୧।

ନାଗର ରେ ! ଶଢଘଣ୍ଟିଆ ଲମ୍ପଟ
ଜାଣୁ ତୁ କର ମନ ଚୋର
ରଙ୍ଗ ରଚୁ ପର-ସଙ୍ଗୀ ତୁ ରେ,
ଯଉବନ ବନ କର ଜୁର । ୨ ।
କେ ଜଗତେ, ମୋହ ବନେ ସତେ
ଫୁଲ ମୂଲ କ ପାରେ ବର୍ତ୍ତର,
ମଧୁ ସରଲେ ମହୁଆ, ମନୁ ଭୁଲୁ
ଭ୍ରମର ଯା ଯା, ଫେର ॥

---

(୧୧୨)

—କହରବା—

ଜାଗି ଜଗି ରଜନୀ, ବିତଲା ତ ସଜନୀ !
ବନ୍ଧୁ ଲାଗି ରେ ବନ୍ଧୁ ଲାଗି ॥୦॥
ପରଦେଶୀ ସମୀର — ଛୁଇଁ ଫୁଲ ଶରୀର
ଛଳେ କରେ ଅଧୀର
ଗନ୍ଧ ମାଗି । ୧ ।
ଊଷା ହସି ଗୁହେଁ — ବନ ପିକ ଗାଏ
ଶତ୍ରୁ-ଚନ୍ଦ୍ରମାଏ — ଝୁରି ବନ ଯାଏ,
ମୁଁ ଅଭାଗୀ । ୨ ।
ଆଶାଟିରେ ମୁଁ ଭୁଲିଲି — ଯଉବନ ସାରିଲି
ଜାଣୁ ଜାଣୁ ହୁଡ଼ିଲି,
ଶଠ ପ୍ରେମେ ହେଲି ଯା—
ମୁଁ ସୋହାଗୀ । ୩ ।

---

(୧୧୩)

—ଦାଦରା—

ଫୁଲେ ଫୁଲେ ଆସ ପ୍ରିୟ ! ଫଗୁଆ ମଳୟ ଗନ୍ଧେ,
ଗେଲେ ଲୁଚୁଥିଲ, ଲତା ହାତ ଠାରି, ମଧୁର ଦୋଳନ ଛନ୍ଦେ ॥୦॥

ସାରା ମଧୁ ମାସ ବାସ-ଫୁଲୁରି ଅତର ବୋଳି ଗୋ।
ଛଇଳ କୋଇଲି କୁହୁ କୁହୁ ବୋଲି ଡାଳେ ଖେଳେ ଦୋଳି,
ଭରା ଶଶୀ, ନଭେ ବସି, ଗୁହାଁଥିଲି ହସି ମନ୍ଦେ । ୧ ।

ଜାଗି ଯାମିନୀ ଗାନ୍ଧୁଛି ପଡ଼େ ମନେ
ଛବ ଅଭୁଲା ଉଭାଚ ଚରି ଏ ମରମେ
ବାରେ ବାରେ ଆସେ ସେ ଯେ ସପନେ
ପ୍ରିୟ ଗୋ ! ଚରଣ ବନ୍ଦେ । ୨ ।

---

(୧୧୪)

—ଖେମଟା—

ମାଳା ଫୁଲ ଫେରି ନିଅ ଗୋ, ନିଅ ଗୋ ଫେରି
ଭୁଲା ଆଖି ଝୁରି ପନ୍ଥେ ମୁଁ, ଯାଏ ଗୋ ମରି ॥୦॥

ପଶ୍ଚିଲ ପରଶ ଧନ
ପଶ୍ଚିଲ ଭଳିଲା ମନ
ପଥହରା ଶତ ତାରା, ଦେଖିଚ ସୁଖ ସପନ
ଗୁହାଁଥିଲା ପରା ଶଶୀ, ନଥର ଗଗନ ଭରି । ୧ ।

ଆଜ ଯେବେ ନାହିଁ ମନେ, ସେ ଦିନର ମନ ସ୍ନେହ
କରଜନେ କାନେ କାନେ, ଛଳ କଥା ଥିର ଥିର
ଯାଅ ଭୁଲି, ଯିବ ଭୁଲି, ଆଖି କୋଣେ ନୀର ଭରି ଗୋ । ୨ ।

---

(୧୧୫)

— ଖେମଟା —

ଭୁଲି କି ମନ ସ୍ନେହ — କୁଞ୍ଜବନେ,
କୁହୁ ଗାଇଲୁ ?
ଅଧିନେ, କି ମନେ ତୁ ଫେର ଚାହିଁଲୁ
ତୋ ବିନା ସୁମନା ମନେ — ସରାଗ ନାହିଁ ସପନେ
କି କରି ପାଶୋରି ଭୁଲିମନ ରହିଲୁ ? ।୧।
ଆଜରେ ଆସିଲୁ ଫେରି—
ହଟେ କି ବସନ୍ତ; — ସ୍ନେହ
ପଞ୍ଚମରେ, ମୁରଲୀ ରେ — ତାନ ଧରିଲୁ ।୨।

---

(୧୧୬)

— କହରବା —

ବନ-ଫୁଲ ଶେଜ ବିଛାଇ ଆଜ
ଦେ, ଦେ, ନାଗରୀ ॥୦॥
ଚାନ୍ଦନୀ ହାସେ—ମଳୟ ସୁବାସେ
ଆସ ତୁ ପାଶେ, ନାଚି ସରସେ
ଖୁହିଁ ତୋ ଆଶେ—ନାଗର ବସେ
ହସି ହସି ପ୍ରୀତି ଗୀତ ଗା ସୁନାଗୋରୀ ।୧।

କୁଣ୍ଡଳ ସାଜ— ଅଙ୍ଗ ରୁ ମାଜ
ମୋହନ ବେଶେ ଥାଅ ରୁ ଆଜ,
କଙ୍କିଣୀ ସାଜ୍, କଣି କଣି ବାଜ
ତନ ମନ ଧନ ହର ନେ ରସ ସାଗର ।୨।

---

(୧୧୭)

—କହରବା—

ଅନା ନାଁ ଫେର, ଯା' ଗଲୁ ପାଶୋର
ଗଲଣି ସେ ଯାଉ ଗଲେ, ପଥ ଭୁଲ
ମନେ ମନେ ମନ କଥା, ମନେ ମନେ ଯାଉ ମର ॥୦॥
ସେ ଯେବେ ନର୍ଶାଥେ ଆସେ ଗୋ ସପନରେ
ଅନ୍ତରେ ଲୁଚାଇ ରଖିଥା ଗୋପନରେ,
ପାହାନ୍ତ ପବନ ଯେବେ ଯାଏ ବହି
ଆଖି ଆଗେ ରୂପ ତାର ନାହିଁ ନାହିଁ
ବନେ ବନେ ମନ ପକ୍ଷୀ, ଗାଇ ଗାଇ ମରୁ ଝୁର ।୧।
ଆମିତ୍ରୁ ଥିର ଥିର ମହୁଆ ଚୋର ସୁର
କୋଇଲ ଗୁହିଁରୁ ଫେର
ଗଗନେ ସେ ଚାନ୍ଦ—ପାତି ପ୍ରୀତି ଫାନ୍ଦ
ଦେଇଚ ପସରୁ ମେଲ ।୨।

---

(୧୧୮)

—କହରବା—

କେ କହେ ସେ, ଦୁରେ ନସେ ତ ଥାଏ ମୋ ପାଶେ ନଉତେ
କୋଇଲ କଣ୍ଠେ, ସେ ମୋତେ ଡାକେ, ମଳୟ ସଙ୍ଗେ କ ସତେ ! ॥୦॥

ଶ୍ୟାମ ଅଙ୍କେ ସେ ମୋତେ, ଠାରେ ସଜାଡ଼ି ଶେଜ ଫୁଲ ରେ
ଭ୍ରମର ଗାଏ, ସେ ସ୍ୱର ଛାଡ଼ି, ସଙ୍ଗେ ସେ ଯେ ଗୁଞ୍ଜେ ରେ
ଡାକେ ଠାରି ସେ ହାତେ ।୧।

(ତା') ତନୁ ସୁଗନ୍ଧ ମନ୍ଦକେ, ରଜନୀଗନ୍ଧା ଶେଯ ରେ
ଚେରଛ ନୟନେ ଠାରେ, ଛଇଳୀ ମଲ୍ଲୀ ଲାଜ ରେ,
ଫେର ଅନାଏଁ, ତାଳ ମିଳାଏ, ଝିଙ୍କାରୀ ତା'ର ସୁରେ—
କହେ ଆସ ସେ ମୋତେ ।୨।

---

(୧୧୯)

—କହରବା—

ଧୀରେ ଧୀରେ ଆ ରେ, ଭ୍ରମର ! ଧୀରେ ଧୀରେ
ଧୀରେ ଧୀରେ ଭ୍ରମର ଫୁଲ କାନେ ଗା'
ତୁ ରେ ଫୁଲ କାନେ ଗା' ॥୦॥
ସଞ୍ଜ ଝୁମାଏ ଗୋ କଞ୍ଜ ଘୁମାଏ ଗୋ
ଆସିବ ସେ ଧ୍ୱେର ସମୀର ଛପି ଛପି ଯା ତୁ ଯା,
ଭେଟିବ ସେ ଲମ୍ପଟ ! ଭୁନ ଭୁନ ଯା, ।୧।

ସାତପୁହା ଅନା, ସାତ ଝୁରିଅନା
ସାଥି ଗୀତ ତୁ କହନା, ମନ ଭୁଲନା,
ଏ ତୋ ତର ଗୁଞ୍ଜନ ମୋହ ପାଇଁ ନା ? ।୨।

---

(୧୨୦)

—ଝାଁପ—

କେ ସେ ଲୁଚିଲି ଡାକି, ଆସ ବୋଲି କାହିଁ ଗୋ ?
ଦୁଆର ମେଲିଲି କାହିଁ କାହିଁ କାହିଁ ନାହିଁ ଗୋ ॥୦॥
ଏ ଘନ ନିଝୁମ ରାତି ଦୁଲୁ ଦୁଲୁ ଥରେ ଛାତି
ଚମକି ବିଜୁଳି ସରି ଗଲା ସତେ ଗୁହାଁ ସେ,
ଜୀବନରେ କେତେ ଗୀତ ରହିଲା ଏ ମରମେ
ଗାଇ ନାହିଁ ଲୋକ ଲାଜେ ମରେଁ ଛୁ ଛୁ ସରମେ
ଅନାଇଁ ପାରି ମୁଁ ନାହିଁ ଆଖି ଭରି ବଦନେ
ଅଧା କୁହା କଥା ରହେ ତା ପଛେ ଅନାଇଁ ଗୋ ।୧।
ଆଶାଯୀ ନୟନ ମୋର ଭରିଗଲା ଧାରେ ଗୋ,
ଝରିଲା ଯୁଗଳ ଗଣ୍ଡ କଜ୍ଜଳର ଧାରେ ଗୋ,
ଚଞ୍ଚଳେ ଆସିଲି ଧାଇଁ – ଦୁଆର ମେଲିଲି ସହି !
ସପନର ଛବି ପରି ଗଲା କି ଉଭାଇ ଗୋ ।୨।

(୧୨୧)

—ଖେମଟା—

କୁହୁ କୁହୁ କୁହୁ କୁହୁ
କେ ସଖୀ ଗୋପନେ ଗାଏ
ମରମେ ପରଶେ ଗୋ, ସରମେ ଜୀବନ ଯାଏ ॥ ॥
ଚତୁର ମଳୟ ସହି ! ଦ୍ୱେର ପରି ଫେରି ଗୁହାଁ,
ଓଢ଼ଣୀ ଉଡ଼ାଇ ଦେଇ, ସେ ସୁର କାନେ ଶୁଣାଏ ।୧।

ଛଇଳ ଭ୍ରମର ପୁଣି, ସାଜେ ଲତା ମଥାବେଣୀ
କୁସୁମ ଅତର ଆଣି, ପିରତ ବେଣୁ ବଜାଏ ।୨।

— — —

(୧୨୨)

—କହରବା—

ଫୁଲେ ଫୁଲେ, ଗେଲେ ଗେଲେ
କଏ ଦେଲା ରେ—
କଏ ଦେଲା ଏ, ଗୋଲାପି ରଙ୍ଗ ॥ ୦ ॥
ଗଗନ ପବନ ଭରି ସୁଗନ୍ଧ ଭସି ଆସେ
ମଧୁର ମିଳନ ପରକାଶେ
ତରୁ ଭୁଲେ ଲତା ଛନ୍ଦା,
ଯୁହିଁଝୁ ରଜନୀଗନ୍ଧା,
ସରଗ ସୁନ୍ଦରୀ ଝୁରି—କୁମୁଦିନୀ ସୁକୁମାରୀ
ଝରିଲାଣି ଦେଖି ସଙ୍ଗ
ଆସ ବନ୍ଧୁ, ମୋର—ଆସ ପ୍ରିୟ ମୋର,
ପରଶି ଦିଅ ଗୋ ଅଙ୍ଗ ।

————

(୧୨୩)

—ଖେମଟା—

ଉଠ ଉଠ ଜାଗ ପ୍ରିୟ,
ପାହିଲା ସପନ ରାତି
ହସିଲାଣି ଊଷାରାଣୀ ତେଜ ଗୋ ମିଳନ, ସାଥୀ ॥ ୦ ॥

ଡଗରୁ କୋଇଲି ଗାଏ,—ସୁଖ ଝଣି ପାଢ଼େ ପାଢ଼େ
ଝରି ଝରି ଯାଏ ସବୁ ରସଭରା ସେ ପୀରତି
ଲଭି ଆସେ ଚନ୍ଦ୍ରାବତୀ,
ବାଲି-ଘର ହସ ଖେଳ, ଯଉବନ ଉଛୁଳ
ପଲକରେ ଯାଏ ତ ବତି । ୧ ।

ରହେନା, ରହିବ ନାହିଁ—ଗୁମାନ ଗରବ ସୁଅ,
ବହେନା, ବହିବ ନାହିଁ—ସବୁଦିନ ଏ ମଳୟ,
ଏ ମିଳନ ଭରା ସ୍ମୃତି
ବାହୁର ବନ୍ଧନ ପ୍ରିୟ !—ଶିଥିଳାଇ ଦିଅ ଦିଅ,
ଭରା ହେବ ଥିଲେ ନିତି । ୨ ।



(୧୨୪)
—ଦ୍ରୁତ-ଏକତାଳି—

ଫୁଲର ପରି ଖସିଯିବ ଯଉବନ
ଉଚ୍ଛୁର ନ କର ସାଥୀ !
ଏ ରାତି ପାହିଲେ ଜୀବନରୁ ପରା,
ଦିନଟିଏ ଯିବ ବିତି ॥ ୦ ॥

ଏଇ ତ ସଜନୀ, ସେଇ ଶୁଭବେଳ,
ଭରା ମଧୁ ପିଇ ହେବା ଗୋ, ପାଗଳ
ଆମ ଲାଗି ଏକା—ଆଜ ଚାନ୍ଦ ଲେଖା
ଆମ ଲାଗି ଆଜ ରାତି
ଉଚ୍ଛୁର ନ କର ସାଥୀ । ୧ ।

ଏଇ ତ ମଳୟ ଆସେ ଢଳ ଢଳ
ଝାଡ଼ ପୋଛୁ ଢଏ ପ୍ରୀତି ପଥ ଧୂଳି,
ଆମ ଲାଗି ଏକା — କୋଇଲର ଦେଖା
ମିଶାଇ ଦଅ ଗୋ ଗୀତ
ଉଚ୍ଛୁର ନ କର ସାଥୀ । ୨ ।

---

(୧୨୫)

—ଦ୍ରୁତ-ଜିତାଳ—

ଦୂରେ ଥିଲେ ଥାଅ ପ୍ରିୟ ଗୋ !
ଦୂରେ, ମୋ ଆଖିର ଦୂରେ,
ବାନ୍ଧି ମୁଁ ରଖିଛୁ ପ୍ରିୟ ଗୋ,
ଗୁନ୍ଥା ଏ କୁସୁମ ହାରେ ॥୦॥
କୁସୁମେ ଭରି ମୁଁ ପ୍ରାଣ,
ଦେଇଛୁ ତାକୁ ମୋ ଗଣ,
ଯେତକ ଅକୁହା ମୋର, କହିବ ସେ ନନରେ ।୧।
ଦେବତା ଚରଣ ଲାଗି
ସାରା ଗୃହ ନିଶି ଜାଗି
ଧୋଇଚ କୁସୁମ ଦଳ, ଏ ଆଖି ଯମୁନା ଧାରେ ।୨।
ଘେନ କି, ନ ଘେନ ହାର
ସେ ତ ଫୁଲ ମୂଲ ମୋର
କାୟା ତୁମେ ଥିଲେ ଦୂରେ, ଛାୟା ମୁଁ ପାଶରେ ଘୁରେ ।୩।
ନୟନ ମେଲିବ ନାହିଁ,
ପଳାଇବ ସିନା କାହିଁ,
ରଖିଛୁ ତ ଜଗି ଜଗି ଯୋଡ଼ା ଆଖି ମୁଦ-ଘରେ ।୪।

— — —

(୧୨୬)

—ଦାଦରା—

କମଳମୀ ଗୋ ! ଭ୍ରମର ଲୁହଇ ଚୋର,
ମନ କଥା ମନୁ ପୋଛୁବା ପାଇଁ ତୁ
ଆଖି ମାର କର ସାଇ ॥ ୦ ॥

ରଖିଥିଲୁ ଯେତେ ସୁବାସ ପରାଗ
ବୋଳିବୁ ଚରଣେ ଦେବତା ମଣି,
ପାଟ ଆଡ଼ୁ ଆଲେ କାଠ ପଥର ସେ,
ମହାକାଳ ଚଳ କାଳମା ଖଣି
ମିଛ ସେ ସପନ ଚୋର—ମନ-ଢଆ କାରବାର ।୧।

କେତେ ନିଶି ଜାଗି ଜାଳନ୍ତୁ ଜାଗର
ଲଭୁଅ ଗୋ ଶିଖା ଚାର
ଛୁଣ୍ଡାଇ ଦଅ ଗୋ ଗୋଟି ଗୋଟି ଗୁନ୍ଥାବାସନା କୁସୁମ ଦଳ ।୨।

———

(୧୨୭)

—କହରବା—

ମୋର ଆଖି ଠାରୁ ଦୂରେ ଥିଲେ ଥାଅ (ପ୍ରିୟ)
ମୁଁ ତ ରଖିଛି ଗୋ ମରମେ,
ମନ ଗହନର ଯେତେ ଯେତେ କଥା,
କହୁ ନାହିଁ ସିନା ସରମେ ॥୦॥

ଯେବେ କା ନ ଯେବେ ଫୁଲ ଦଳ ମୋର
ଶୋଚନା ଟିକଏ ନାହିଁ,
ଦେବତା ମନାସି ଢାଳି ଦେଲି ପଦେ
ପୂଜା ସାର ହେବାପାଇଁ,
ତୁଅଁ ଯଦି ଅବା ଭରମେ । ୨ ।
ସେତିକି ଗୋ ମନଚୋର !
ସେତିକିରେ ସୁଖ ମୋର
ନିଦ ଘର କଳି, ସପନର ସାଥୀ !
ଛନ୍ଦା ମୋ ଆପଣାର
ଦେଖା ଦିଅ ଥରେ ଚରମେ । ୩ ।

———

(୧୨୮)

—କାହାରବା—

ମିଶାଇ ପ୍ରିୟ ଗୋ, ମୋର ମରମ କଥା
ଫୁଲ ହାରଟି ଗୁନ୍ଥା
ପାଖୁଡ଼ା ତଳେ ସଜଡ଼ା ଅନ୍ତର ଫୁଟା
ଯେତେ ମନ ବାରତା ॥ ୦ ॥
ବିରହ ମାଳ ମୁଁ ଢାଳି ପ୍ରୀତି ଲତା ମୂଳେ ଗୋ
ଏ କୁସୁମ ଫୁଟାଇଛି ନିଶି ଜାଗରେ ଗୋ,
ଫୁଲ ଭୁଲେ ଦେଲି ଢାଳି ଚରଣେ ମଥା । ୧ ।
ବିରହ ମାଳ ମୁଁ ଢାଳି ପ୍ରୀତି ଲତା ମୂଳେ ଗୋ
ଫୁଟାଇଛି ଫୁଲ ଆଶା ଯମୁନାର କୂଳେ ଗୋ
ପରାଗେ ଭରିଛି ଖାଲି ଅକୁହା କଥା । ୨ ।

ଯେଉଁ କାନ ଯେନ ପ୍ରିୟ, ଏ ହାରଟି ମୋର ଗୋ
ଚରଣେ ଦଳିଲେ ହେବ ସେ ମୋ ଉପହାର ଗୋ
ପୂଜା ମୋର ହେବ ସାର, ତୁଟିବ ବ୍ୟଥା । ୩ ।

— — —

(୧୨୯)

—ଅଧା-ତିତାଲ—

ନୀର ଲଗି ବନ୍ଧୁ ! ଅଞ୍ଜନ ଭରି ପ୍ରିୟ ଆଖି
କୁସୁମ ସୁବାସ ପିନା ମଳୟର ଲାଖି ॥ ୦ ॥
ଯାଉ ଗୋ, ଗିରିବନ କୁଟୀରେ —
ଝରଣାଟି ଝରେ,
ଆଣାର ମିଳନ ନଏ ନଦୀ ପଥେ ଡାକି । ୧ ।
ଯାଉଗୋ, ନୀଳଘନ ଉରସେ
ମଉନେ କା ପଥ ଚାହେଁ—
ଚାନ୍ଦ ହରଷେ
ଆଶାୟୀ ମଧୁ କିରଣ ଥାଏ ସଙ୍ଗ ରାଖି । ୨ ।

— — —

(୧୩୦)

—ଦାଦରା—

ଉଆଁସ ରାତି ଛପି ଜହ୍ନ ଦେଖା ଦେଲାଣି
ପତର ଫାଙ୍କେ ଫାଙ୍କେ ଆଖି ଠାରି ଗଲାଣି ॥ ୦ ॥
ବଉଦ ବୁକୁ ତଳେ—କଳାଟି ଦୋଳି ଖେଳେ
ଗୋପନେ ପରଦେଶୀ — ଦକ୍ଷିଣା କାହୁଁ ଆସି
ନାଚରୀ ମନେ ବସା କଲାଣି । ୧ ।

ପଡ଼ବ ଖସି ବୋଲ – ଗଗନ-ସୁଧା ଝର
ଚାଗ୍ଏ ବାନ୍ଧ ମେଳ – ଦେଲେଣି ଟାଣି ଜାଲ
ଚକୋରୀ ଝୁର ସାରା ହେଲାଣି । ୨ ।
କୁମୁଦ ଗୁନ୍ଥ ମେଳ – ଡାକୁଛି ମନ ଖୋଲ
ଉଜାଡ଼ି ପଉବନ – ରମଣୀ କୁଳମାନ
ନାଗର ବାଟ ଗୁହିଁ, ମଲାଣି । ୩ ।

---

(୧୩୧)

—ଦାଦରା—

ଆରେ ବସନ୍ତ ଫେର, ଡାକେ କୋଇଲି ରେ,
ମୋର ମହୁଆ ସାଥୀ ॥୦॥
ଚେତ ଆକାଶେ, ଗୁହଁମା ଡାକେ
ସାତ ସାଗ୍ ସେ, ତଲକ ଫାଙ୍କେ
ଖସ୍ତ ତ ନାହିଁ ବାକ – ଚବ୍ ଠାରଲା ଆଖି
ଭସା ପୀରତି ଟାଳ, ସାଜ ଫୁଲ ସୁପାତି । ୧ ।
ମନ୍ଦ ପରେ ତରୁ ଛୁଇଦେ'-
ଧୀର ମାର ଝର ବାହ୍ବ ଦେ
ଫୁଲେ ଫୁଲେ ହାସ ବାସ ମିଶାଇ ଦେ
ରସାଇ ରସେ ମାତି । ୨ ।
ପରଶ ଦେଇ ଯା'ରେ – ପବ୍ସ ନେଇ ଯା'ରେ
ପରବ ଶଣୀ ଆ'ରେ ! ନାହିଁ ସେ ଅମାରାତି । ୩ ।

---

(୧୩୨)

—ଦାଦରା—

ବନ୍ଧୁରେ, ଝୁରେ ଜନା, ସାଥୀ-ହରା ଏ ମାଳତୀ,
ଗୁମରି, ମନେ ମରେ, ସୁନୟନା, ପ୍ରୀତି ସାଥୀ ॥୦॥

ନଧର ଅଧରେ ଭରିଛି ଲାଜ
ସୁମନା ରେ ତୁ ଭେଟ ଆଜି
ଶୁଦ୍ଧମା ବନେ କେହୁ, ହସାଏ କି ଶୁଦ୍ଧ ରାତି ? । ୧ ।

କୋକିଳ, ବକୁଳ ମୁକୁଳ ସାଥୀ
ଶଶୀ ପାଇଁ ଉଠେ ନଶିଟି ମାତି
ନବଘନେ ସିନା ସହି ! ଦାମିନୀ ଜାଳେ ବତି । ୨ ।

ଆଶରେ, ଆଶରେ ନିଶି ବିତାଇ
ରଜନୀ ସଜନୀ ଘୁମ ତ ନାହିଁ
ଜାଗର ଜାଳି କାମିନୀ
ପାତିଛି ପସ ଗୁତି । ୩ ।

---

(୧୩୩)

—କାହାରବା—

ଧୀର ସମୀରେ, କୁଞ୍ଜବନେ,
ସେଇ ସୁର ଗୁଞ୍ଜରେ ଗୁମରି ମନ ମନେ ॥ ୦ ॥
ଏଇ ନା ସେ ଧୂଳି ସାଥୀ କଳିକା ଦୁଇଟି ଗୋ,
ଏଇ ନା ସେ ଶଶୀ ମୁଖ ଗୁଇ,
ମଳୟ ପରଶି ତାର ବୁକୁ ଟହଲଇ ଗୋ
ଲାଜ ହସ ଦେଲା ତ ଶିଖାଇ
ରାସ ରସ ମନ୍ଦରେ, ଭରି ଏ ଯଉବନେ । ୧ ।

ଏଇ ନା ସେ ହସଭରା ଉଛୁଳା ନୟନ ଦୁଇ—
ଜାଗରେ ଯା ଥାଏ ପଥ ଚାହିଁ,
ସୋହାଗ ରଙ୍ଗ ବଢାଇ – ମୁକୁଳା ଚୁମ୍ବ ପଠାଇ
ସାଥୀ ଝୁରୁ ନୃତ୍ୟ ସେ ତ ବାଇ
ବାଜେ ଲୁରୁ ମଞ୍ଜିର ସଙ୍ଗମେ ମନ ବନେ ।୨।

---

(୧୩୪)

—ଦାଦରା—

ଭରା ଏ ବଉଳ ଝୁରୁ ଝରଲା
ନୟନେ ନୟନେ ମୋର ଭ ରଲା
ତୋ ପଥ ଚାହିଁ,
(ତୋତେ ଅନାଇଁ)
ତୁ ଆସିଲୁ ନାହିଁ ॥ ୦ ॥

ସାଗର କୋଳେ, – ଲହରୀ ଖେଳେ
ମଳୟ ଛୁଇଁ, କୁସୁମ ଦୋଳେ
ନୀଳ ଘନ କାନ୍ତ ତଳେ—ଶଶୀ ହସି ଝେଲେ
ମରମେ ମରମ ଭସାଇ ରେ
ପଡ଼େ ଘୁମାଇଁ —ମିଳନ ଚାହିଁ
ତୁ ଆସିଲୁ ନାହିଁ ।୧।

ସୁମର ସାଥି—ଅସରା ରାତ
ମିଳନ ଗୁହାଁ—ମୁକୁଳା ଗୁନ୍ତ
ଏପାର ସେପାର ଝୁରେ ଚକୁଆ ଚକୋଇ
ମାର ତ ନରଭ ଝରାଇ ରେ
ସପନ ଗୁଇ—ହେଲୁ ତ ସବୁ !
ତୁ ଆସିଲୁ ନାହିଁ । ୨ ।

(୧୩୫)

—ଏକତାଳୀ—

ମରମର ବ୍ୟଥା ଗୁମରେ ମରମେ
ତେବେ ବ ତ ମୁଖ ଫୁଟେନା
ବାରଧି ଭରସେ—ଭସି ଭସି ଆସେ
ତେବେ ବ ପିଆସା ତୁଟେନା ॥୦॥
ନଗୁଟିଆ ଦରଫୁଟିଲା କଳଟି
ନଶୁଣିଲା ପର, ଶୁଣେ ଅଳ ଗୀତ
ତହିଁ ମଳୟର ଅଳପ ଚୁମ୍ବନେ
ଅଳସ ନଶୀଥ କଟେ ନା । ୧ ।
ପରଶ ଲାଳସୀ ଅଧର ସୀତ୍କାର
ଆରକତ ଆଭା ସଲାଜ ଗଣ୍ଡର
ନୟନ କୋଣର ଅଶ୍ରୁ ଜଡ଼ତ
ମଉନା ମୁଖ ତା ଫିଟେନା । ୨ ।

(୧୩୬)

—ଦାଦରା—

ନୟନ ଯେଟିକ ଖୋଜଇ ଗୋ !
ସେଟିକ ତୋ ଠାରେ ଦେଖିଛି ମୁଁ,
ଅନ୍ତର ମୋର ଖୋଜଇ ଯା'
ସେଟିକ ତୋଠାରେ ଦେଖିଛି ମୁଁ ॥ ୦ ॥

ଯାର ସନ୍ଧାନ ଆଜ, ଅନ୍ଧାର ଭେଦ
ଅନ୍ଧ ନୟନ ଫେରଇଛି,
ମର ଅନ୍ତର ତମ, ବାଞ୍ଛିତ ଧନ,—ବଞ୍ଚିତ ବୋଲି କହୁଛି,
ସତେ, ସୁଧା ନଧି ଭରା ଅମିୟ ପିୟାସୀ
ଚକୋର ସର ତ ଲୁହିଁଛି ମୁଁ । ୧ ।

ବହୁ ସଞ୍ଚିତ ସେହ୍ନ, ଗୁପ୍ତ ବାସନା
ତୃପ୍ତ ହୋଇଛି ମହୀରେ
(ସେଇ) ଇପ୍‌ସିତ, ଚିର ଇପ୍‌ସିତ ରହୁ
ନାହିଁ ମୋ ଲଜ୍ଜା କାହିଁରେ,
ଝଡ଼, ଜୋଛନାର ଧାର ପାନ କରି ସାରା
ପରାଣ ପର ଗୋ ମଣିଛି ମୁଁ । ୨ ।

ଘନ ବାଦଲ ଗରଜେ, ପାଗଳ ମଳୟେ
ଶରତ ଗୁନ୍ଦମା ରାତରେ,
ତୋର ଅଳସ ନୟନ ଛଳ ହସ ଟିକ
ସୁଧା ଢାଳେ ପୋଡ଼ା ଗୁଡରେ
ସେଇ ଲାଜ ଭୁଲୁ ଭୁଲୁ, ଗୁଇଟି ନୟନ ଗୋ
ନିଲଜ ଜୀବନ ଧରିଛି ମୁଁ । ୩ ।

(୧୩୭)

—ଦ୍ରୁତ-ଏକତାଳୀ—

ନୀର ମଗଲାଣି ସ୍ୱପ୍ନ ତା ପଥେ
କମ ନୟନର, କଜଳ ଢ଼ାଳି,
ଧାର ବନ୍ତ ଦଶେ କାଳମା ସତେ ॥୦॥
ଟିକି ଟିକି ସେଇ ଚରଣ ଯୋଡ଼ିକ
ବାଲ ଗୃପ ମତେ ବାଥଇ ଅଧିକ
ମେଲିଲ ନୟନ, ମୁଦ୍ଧ ଦେଲା ଝଞ୍ଜା,
ଲୁଚିଲା ତା ଗୁଇ, କାନ ପଣତେ ।୧।
ଗୋଲାପ ଦେହରେ ତା ଗଣ୍ଡ ବକଣେ
ମଲ୍ଲୀଟି ଫୁଟିଲେ ତା' ମୁଖଟି ହସେ
ଅବନ ବରଷା ବନ୍ଦୁଏ ପଡ଼ିଲେ
ତା' ନୟନ ମାର ପର ପରତେ ।୨।

— — —

(୧୩୮)

—ଦାଦରା—

ସେ ତ ନ ଆସିଲା ମୋର ॥୦॥
ବସନ୍ତ ଆସଇ, ମଳୟ ଯେବେ ଗୋ,
ଝରଏ ବଉଳ ଫୁଲ
ସେ ଆସଇ ବୋଲି, ଚମକ ଅନାଏଁ
ସତ ନୁହେ ସେ ତ ଛଳ,
ହାତ ପସାରିଲେ ଅଞ୍ଜଳ ଭରେ ଗୋ,
ପୋଡ଼ା ଆଖି ଯୋଡ଼ା ଧାର ।୧।

ପିକ କୁହୁ ଡାକେ ଯେବେ
ଜହ୍ନ ବୋଲି ଶୁଭେ ତେବେ,
ମରମ ମନ୍ଦିରେ ହୁତାଶ ଜାଳଇ
ଗତ କଥା ବାରବାର
ଆସେ ଯାଏ, ସବୁ ମେଲି ଆଖି ଆଗେ
ଭସା ମେଘ ପରକାର । ୨ ।

ଛଗା ଗୃନ୍ଦ ପୁଣି ଉଏଁ —
କୁମୁଦମା ପୁଣି ଗୃହେଁ
ଘୁଇ ନଦ ତଳେ, ଦିନର ସପନେ
ଭେଟ ଖାଲି ତାର ମୋର
ବାହୁ ବନ୍ଧନ, ଆକାଶରେ ଉଡ଼େଁ
ପରଶନ ତାର ଦୂର । ୩ ।

---

(୧୩୯)

—ଦାଦରା—

ବସନ୍ତ ଦିନେ—
ଯେବେ ନ ଆସିଲେ ପ୍ରିୟ ଗୋ
ମରଣ ଜୀବନୁ ଭଲ ॥ ୦ ॥

ଉହାଳ ନାଗରୀ - ମନ କର ଘର
ମଥାରେ ଖୋସିଚ୍ଛୁ ଫୁଲ ଟାହୁଆ,
କୋଇଲଟା ଆସି—ତା କୋଳରେ ବସି
ଜଳୁଲାଇ ଦେଲା ଦରଦ ହୁଆ,

ସତ୍ତେ ମୋତେ ତ ଝାସ୍ତୁଳା କଲେଣି
ଆହା ବୋଲ ସାହା, ନାହିଁ ତ ମୋର
ତୁମେ ପୁଣି ପ୍ରିୟ ! ଜୀବନର ସାଥୀ
ତୁମେ କର ଦେଲ ହାତପର ? ।୧।

———

(୧୪୦)

—କହରବା—

ଏଇ ଆସେ, ଶୀତ ଆସେ
ଶିଶିର କାକର ଭସେ ॥ ୦ ॥

କୁହୁଡ଼ି ଆସିଲା ମାଡ଼ି,
ଚଉଦଗ ଗଲା ଘେରି
ଥରେ ତନୁ ଥର ଥର,
ଏଇ ଭଗ୍ନ ଶୀତ ମାସେ । ୧ ।
ପତର ଗଲାଣି ପଡ଼ି
ଝାଉଁଲିଲା ଫୁଲ କଢ଼ି
ଡାଖ୍ଡ଼ା ପଡ଼ିଲା ଝଡ଼ି,
ସବୁ ମଳାପର ଦିଶେ । ୨ ।
ଶୀତର ମହିରେ ଲୁଚକାଳି ଖେଳ
ପ୍ରେୟର ପର କଏ ଆସିଲା ଇଏ
ବସନ୍ତ ରଙ୍ଗର ଲୁଗା ପିନ୍ଧା ତାର
ଦେହରୁ ବଉଳ ବାସନା ଢଏ,

ଗେଲାଇ ଗେଲାଇ ଫୁଲ ପାଖେ ଯାଇ
ଗୋଟି ଗୋଟି କରି ଛୁଇଁ ସେ ଗଲା,
କାନେ କାନେ ସତେ କି କଥା କହି ସେ
ଶୋଇଲା ଶେଯରୁ ଚେତାଇ ଦେଲା,
କାହାଁରି ପରଶ କି ସେ ! ।୨।

———

(୧୪୧)

—ଦ୍ରୁତ-ତ୍ରିତାଳ—

ଆମ୍ବ ଡାଳେ ଡାଳେ ବଉଳ ଝୁଲାଇ
ଶୁଣାଇଁ ଶୁଣାଇଁ କୋଇଲି ଗୀତ
ଆସିଛି ମୁଁ, ଆସିଛି ଆସିଛି ପରା ବସନ୍ତ ।।୦।।
ଉଠ କୁମୁଦିନୀ ଉଠ—ଆଉ, କାହିଁକି ଗୋ ମଠ ମଠ ?
ମଉଳିଲା କଳି ଫୁଟ ଫୁଟ—ଲୁଚିଲାଣି ତନୁ ଥରା ଶୀତ
ଦକ୍ଷିଣା ପବନେ ଖେଳ ଖେଳ
ଡାଳେ ଡାଳେ ନାଚ ଛଳ ଛଳ
ନାଲି ନେଳି ରଙ୍ଗ ଭଳି ଭଳି
ଶାଢ଼ୀ ବାଛି ପିନ୍ଧ ଆସ ମିତ ।୧।
ତୁମ ଦୂର ଡାକ, ବାରି ଫୁଟେ ଫୁଲ ଫୁଲ ଦର ଦର ହସି,
ଅଧମରା ତରୁ ଶାଖାରେ ଶାଖାରେ, ନୂଆ କଢ଼ି ଦେଖାଦେଲା ଆସି
ଆସ, କୋଇଲି ଡାକ ଦେଲାଣି
ଆସ, ମଳୟ କହି ଗଲାଣି
ଶୀତ ଘାତରେ ଏ ଧରଣୀ ସାରା
ଝୁରି, ରହିଛି ତ ତୁମରି ପଥ ।୨।

ଦିଅ ଅଙ୍ଗେ ଅଙ୍ଗେ ନୂଆ ଜୀବନ ଭରି
ଦିଅ କଣ୍ଠେ କଣ୍ଠେ ଚେତି ସୁର ଲହରୀ
ନୂଆ ପୁଲକ ଭରି,--ଦିଅ ମନେ ସବୁରି, ଶୁଭଦିନ ଆଗତ ।୨।



(୧୪୨)

—ଦାଦରା—

ମାନେ ନାହିଁ ମନ ମୋର ॥ ୦ ॥

ଲତା ଗହଳରେ ଚହଲ ପକାଇ
ପିକ କଣ୍ଠେ ଗୀତ ଲେଖି
ବାରେ ବାରେ ଆସି ଫେରେ ସେ ବସନ୍ତ
ବଉଳରେ ରଖି ସାକ୍ଷୀ ।
ବଣମଲ୍ଲୀ କହେ ଦରହସି ମୋତେ
ଆସିଥିଲେ ମନ ଚୋର,
ଆଶାର ଆଶାୟୀ ବ୍ରତକ ମୁଁ କାହିଁ
ଦରଶନ ନାହିଁ ତାର । ୧ ।
ବଉଳ ମହିରେ ବସନ୍ତ ଆସିଲା
ଢଣେ ତା ପଣତ ଘୁଇ,
ଲତା ଉହାଡ଼ରେ ଫୁଟା ନଆଳଟି
ପ୍ରିୟୁ ଆଶେ ରହେ ଚାହିଁ,
କାହିଁ ତା ମହିରେ, ସେ ଗୃନ୍ଦ ମୁହଁଟି
ନ ଦେଖିଲି ବାରେ ତାର । ୨ ।



(୧୪୩)

—ଦାଦରା—

କହିବ କହିବ ବୋଲି
 ଅଧର ଦୁଆରୁ ବାହୁଡ଼ିଲା କଥା
 ଲାଜେ ମଲି, ଲାଜେ ମଲି ॥ ୦ ।

ବରଷୁ ଥାଏ ଗୋ ସେଦିନ ସଘନେ ଘନ,
ଘୁମ ଢୁଳୁ ଢୁଳୁ ପୋଡ଼ା ଆଖି ମୋର—
 ଦେଖୁଥାଏ ଖାଲି ଅଭୁଲା ଦିବା-ସପନ
 ଆସିଥିଲେ ପ୍ରିୟ ମୋର
 ଦୂରେ ଦୂରେ ଦେଲି ଠେଲି । ୧ ।

ମନ ପଡ଼େ ସେ ଗୋ, ନରମ କଣ୍ଠେ ଡାକୁଥିଲେ ନାମଧରି,
ଉଠ ପ୍ରିୟ ! ଉଠ, ନଗୋଲା ଏବେଳ, ଶୁଭୁଥିଲା ଥିରି ଥିରି,
ଥରି ଉଠୁଥାଏ ମନ—ଅରେ ଉଗ୍ର ପଉବନ,
ତନୁ ପରଶରେ ଶୀତ ଆସେ ବୋଲି, ସତେ ମୁଁ ନଥିଲି ବାରି ।
ତେବେକେ ନଠୁରି ମନ ମୋର ପରା, ନଗୁହିଁଲା ଆଖିମେଲି ।୨।

ଆପି ଦେଲେ ସେ ଗୋ, ତଅାଁ ସପନରେ, ଗନ୍ଧେ ସରଗ ଧୂପ,
ଲଭ ଲଭ ନାହିଁ, ଲଭିବ ନାହିଁ ଗୋ, ରଙ୍ଗିମା ତାର ରୂପ,
ଚରଣ ଶବଦେ କାର, ଚମକିଲେ ମନ ଚୋର,
ଗାର ଟାଣିଦେଲା, ନଈ ମଝିରେ ଗୋ ! ସତେ କି ତାଣ୍ଡିଲା ବାଲି ।୩।

———

(୧୪୪)

—ଦାଦରା—

ନୀର ଝରେ, ନୟନ ଝରି ବାହ୍ମ
 ନଶି ଦିନ ତା ବିନା ନିଦ ନାହିଁ ॥ ୦ ॥

ଋତୁ ବସନ୍ତ ହସି ହସି ଆସିଲା
ଦିଗ ଦିଗନ୍ତ କୁସୁମ ବିକଶିଲା
ଅତି ଦୂରନ୍ତ କୋଇଲି ଡାକ ଦେଲା
ପ୍ରିୟ ରହିଲା କାହିଁ ? ।୧।

ଗୁରୁ ଗ୍ରୀଷମ ରାତି ଜାଳେ ହିଆରେ
ଝୁରୁ ମନ ନିଶିଦିନ ଖୋଜେ ପ୍ରିୟାରେ
ଘୋର ବାସ ଚନ୍ଦନ ଗୋଳା ଚୂଆରେ
ଝୁରି ମରେ ଆଶା ପଥ ଚାହିଁ ।୨।

ଅନା ଅନା ଗଗନେ ଘନ ଘେରିଲା
ମୟୂରୀ ମୟୂର ନାଚେ ବନ ଭରିଲା —
ପ୍ରିୟା ବିନେ ହିଆ ବର ଥର ଥରିଲା
ବିଫଳ ଜୀବରେ ଜୀବ ଥାଇ ।୩।

ଶେଫାଳୀ ମଉଳିଲାଣି ଶେଷ ନିଶିରେ
ଚନ୍ଦ୍ର କୋଳେ ସେଇ ମୁଖ ଯାଏ ଭାସିରେ
ପଲକ ନୟନେ ନାହିଁ ସେ ତ ପରବାସୀ ରେ
ଆସେ ରାତି, ଯାଏ ରାତି ପାହି ।୪।

---

(୧୪୫)

—କାହାରବା—

ଭରା ଶଶୀ—ଝରା ରାତି—ଯାଇଛୁ କାହିଁ ଗୋ ସାଥୀ !
ପଲ୍ଲବ ଚରାଚି ନତ—ଜାଳେ ଯେବେ ପ୍ରୀତି-ବାତି ।।୦।।

(ଯେତବ) ଫଗୁଣ ଫଗୁଆ ବାଆ, –
ଦେଇଥିଲ ରଙ୍ଗର ଛୁଆଁ
କଣ୍ଠ ସଜାଇ ଦେଲ, ବଉଳର ହାର ଗୁନ୍ଥି । ୧ ।
ଭୁଲିବ ଭୁଲିବ ଭବେଁ, ପୋଡ଼ାମନ ଯାଏ ଭୁଲି,
କଳା କୋଇଲଟା ଡାକେ,
(ପାଦ) ଅଭିସାରେ ଯାଏ ଚାଲି । ୨ ।

—— –

(୧୪୬)

—ଏକତାଳୀ—

ସେ ଯେ ନୟନେ ନୟନେ ଭାସି ଆସେ
ଶୟନେ ସପନେ ତାର ଛବିଟି ମୃଦୁକ ହସେ ॥ ଠା॥
ମରମେ ବାଜେ ତାହାର —
ଚରଣ ନୁପୂର ବାଣୀ
ଚଲିପଥ ପାଦ ମୋର
ତା ପଥେ ଗୋ ଜାଏ ଟାଣି,
ତା ଅଙ୍ଗ ସୁବାସ ଘେନ
ସୁମନ ମହକ ବାସେ । ୧ ।
ଜ୍ୟୋତ୍ସ୍ନା ରାତରେ ଯେବେ
ଖେଳେ ମେଘେ କାଳ – ଜହ୍ନ
ଲୁଚକାଳି ଖେଳ ତାର
ଚହଲଇ ଦିଏ ମନ,
ମୋତେ ଦେଖି ପରଦେଶୀ
ବାଆ ଆସି ପରିହାସେ । ୨ ।

— — —

(୧୪୭)

—ଦାଦରା—

ପରଦେଶୀ ସମୀର ରେ !

ମୋ ମନ କଥା କହ ଥରେ

ଆଶାରେ ଆଶାରେ ମୋର ମାର ତ ନରତ ଝରେ ॥୦॥

ଦାଉ ଦ୍ୱକଣିତ ଅନାଁ । ଏଇ ଯେ ବନ ନଆଳ

କରନା କରନା ମନା, ଫୁଟି ସେ ଯାଉ ଝାଉଁଳ,

ଝରା ପାଖୁଡ଼ାଏ ବନ୍ଧୁ, ଯାଅ ଦୂର ପଥବାନ୍ଧୁ

ବୁକୁରେ ଲଗାଇ ଦେବୁ ଚିହ୍ନିଲେ ଚିହ୍ନିବ ସେ ରେ । ୧ ।

ମନ ଖୋଲ ଧନେ ହେଲେ କହ୍ନ ନାହିଁ ମନ କଥା

ବୁକୁ ପରା ଫାଟିଯାଏ, ସତେ କ ବୁଝିବେ ସେ ତା

କେତେ ତ କଳପି ଥାଏଁ—ଭେଟ ହେଲେ ଭୁଲି ଯାଏଁ

ଦେଖିଲେ ଗୁମାନ କରେଁ—ନ ଦେଖିଲେ ଝୁରି ମରେଁ । ୨ ।

ଆଖି-ତଳେ ଛପିଥାଏ, କଥା ପରା ଅବଳାର

ମୋ ବେଳକୁ ସତେ ସତେ, ସେ ତ ହେଲା ପାଣିଗାର

ମନ ଯାହା ଲୋଡୁଥାଇ—ମୁଖ କହେ ନାହିଁ ନାହିଁ

ଲାଜ ଆସି କହୁଛି ଢଏ, ପାରନ୍ତି ପୁରନ୍ତି ଘରେ । ୩ ।

---

(୧୪୮)

—ଦ୍ରୁତ-ନିତାଲ—

ଶୋଜ ତେଜ ମାନନୀ ଲୋ !

ଉପଗତ ଦ୍ୱାରେ ଭିକାରୀ

ସମୀର ଅଧୀର ତୋର ଅଙ୍ଗ ସଙ୍ଗ ହେଜ

ମେଘ ସାରା ବୃନ୍ଦ ଖୋଜେ ଝୁରି ॥ ୦ ॥

ଶରତ ଶୁଦ୍ଧମା ଚଳେ
ସବୁଜେ ସାରସ ଚଳେ
ମାନସ ଆଶାରେ ଝୁଲି ଝୁଲି,
ଜାଗ ବଧୂ—ଦଅ ମଧୂ
ବଧୂଲି ଅଧରୁ ଥରେ—
ଶଶୀ ନଶିଯାଏ ପରୁ ସର । ୧ ।

ଏ ଆଜ ନଥିବ କାଲି
ଲୁଚ ଖସିଯିବ ଶ୍ଯାଳି
ମଉଳ ଯିବ ଗୋ ଫୁଲ କଳି,
ଝୁରି ହେଲେ ବାସି ଫୁଲେ
ଅଳି କି ରେ ଆଉ ଭୁଲେ
ପାତୁଛି ଅଞ୍ଜଳି, ଦଅ ଭରି । ୨ ।

———

(୧୪୯)

—ଏକତାଳୀ—

ଗରଜ ଗରଜ ଆଜ ଘୋର ଗରଜନେ
ବରଷ ବରଷ ବାରି ଧାରା
ପଥ ଗୃହୀଁ ଗୃହକ ଆତୁର ଅନ୍ତରେକ
ହର ହର ଘନ ! ଦୁଃଖ ଭାରା ॥ ୦ ।

ସରଜ ପ୍ରଳୟ କଇଳାଶେ
ଦାମିନୀ ଝଲକ ପରକାଶେ,
ହରକର ଡମ୍ବରୁ, ମନ୍ଦେ ବାଇ ଉଠୁ
ସୁରଧୁନୀ ହେଉ ପଥ ହାରା । ୧ ।

ଧଇବତ ସୁରେ ଡାକେ ଭେକ,
ଡାକେ ଡାହୁକ ମକମକ,
ନଥର ପଥର ମୁଖେ—ବାଣୀ ଦେ'ଭଣ ଗୋ
ମୟୂର ପୁଚ୍ଛେ ଖେଳୁ ତାଣ୍ଡ । ୨ ।

---

(୧୫୦)

—ଦାଦରା—

ଭରସା ବସନ୍ତରେ ଆଶାର ମୁକୁଳ, ଆସ
ଭରି ଦିଅ ମନେ ଫୁଲ୍ଲଶ୍ରୀ ଅତର ବାସ ॥ ୦ ॥
ଆଗମନୀ ଗାଏ ବନର ବିହଗ
ଫଗୁ ଖେଳି ଖେଳି ହସେ ତଡ଼ାଗ
ବିକଚ କମଳ ନ ଧର ଅଧରେ
ଫୁଟେ ଦର ଦର ହାସ । ୧ ।
ଆଣି ଆସ ସଙ୍ଗେ ନବୀନର ବଳ
ସବୁଜ ବନର ନୂଆ ଫୁଲ ଦଳ
ଅଜାଡ଼ି ଦିଅ ଗୋ ନିରସ ପରାଣେ
ଭରା ଯଉବନ ରସ । ୨ ।
ସାରା ଜୀବନର ତୁମେ ଗୋ ନୂତନ
ପାଶୋରାଇ ଦିଅ ତୁମେ ପୁରାତନ
ସୁଖ ଦୁନିଆର ତୁମେ ଗୋ ଭରସା
ଆସ ଗୋ ଅତିଥି ଆସ,
ନବୀନ ବରଷ ଆସ ।   ।

---

(୧୫୧)

— ଆଡ଼ଖେମଟା —

ନୟନ ପିନା, ଦୂର ନୟନ ସାକ୍ଷୀ
ଅଦେଖା ଦେଖାଏ, ଅଲେଖା, ଲେଖାଏ
ମାରେ କଜ୍ଜଳ ମାଖି ॥ ୦ ॥
ରସାଏ, ରୁଷାଏ—ଝୁରାଏ, ଝୁରାଏ
ନୟନେ ନୟନ ଯୋଖି । ୧ ।
ଖୋଲା ଆଖି ଠେଲି ସପନ ଦେଖାଏ
ଘାରେ ବୁକୁତଳେ ଲୁଚି । ୨ ।
ଚେତନା ହଜାଏ, ଚିତ୍ତ ଚହଲାଏ
ମାରେ ସେ ତ ଠାର ଡାକି । ୩ ।
ସାରା ଦୁନିଆଁରେ କବିଚନ୍ଦ୍ର ଡରେ
ଏକା ସେଇ'ଛଳ ଆଖି । ୪ ।

———

(୧୫୨)

—ଦାଦରା—

ଯଦି, ମରମେ ନାହିଁ ଗୋ ଲେଖା,
ଦେଲ କାହିଁକି ପ୍ରିୟ, ମିଛେ ଆଖିର ଦେଖା ? ॥୦॥
ଯଦି ମନେଥିଲା ଗୋ, ଆସି ପଲକ ପାଇଁ
ଲୁଟି ଅବଳା ମନ, ସରେ ଯିବ ଭୁଲାଇ
ନଣି ହେଲେ ପାହାନ୍ତ, ଭେଦେ ପଥ ଅନାଇଁ
ନାହିଁ ନ ପାଏ କାହିଁ, ଖୋଜ ଚରଣ ରେଖା । ୧ ।

ଦଳି କୁସୁମ କଳି, ତୁମେ ଯିବ ଗୋ ଚୂଳି
ଏତେ କପଟ ବୋଲି, ସତେ ଜାଣି ନ ଥିଲି,
ଘୁମ ଭାଜିଲା ମୋର, ଏବେ ଚେତ ଚୂହିଁଲି
ମନ ଗରଲ ଭରା, ମୁଖ ଅମିୟ ମଖା । ୨ ।
ମୁଁ ଯେ ଦେଇଛୁ ତୋଳି, ସାରା ଜୀବନ ଧନ
ଟେକି ଚୂହିଁବ ବୋଲି, ଆଜ ନାହିଁ ଲପନ
ଚୂନା ହେଲା ସିନା ଗୋ, ଯେତେ ସୁଖ ସପନ—
ଦୂରୁ ଯୁହାର ମୋର, ଦୂରେ ଥାଅ ଗୋ ସଖା । ୩ ।

---

(୧୫୩)

—ଦାଦରା—

**ଚୈତ୍ରର** ବସନ୍ତ;—ମଧୁ ମାସିଆ,
ଆ ରେ ଛଇଲ ଫୁଲ ରସିଆ ॥୦॥
ବଉଳ ମହକିଲା—ସୁବାସ ଚହଟିଲା
ତୋଷା ଗହଳେ ଶୁଭେ କୁହୁ,
ଚୂହିଁ ଦେଇ ତୁ କାହିଁ ଯାଉ ?
ବନ ପଲାଶ ମନ ତୋଷିଆ । ୧ ।
ଆସିବୁ ତୁ ବୋଲି ନବ ଯଉବନୀ
କାମିନୀଟି ଦର ହସେ,
ଶକ୍ତଣ ମେଘରେ ଚହଟ ବୃନ୍ଦନୀ—
ତୋ ବାଟ ଅନାଇଁ ବସେ,
ଝରା ଗୋଳ କାଠି ଆମ୍ବ ମୁଣ୍ଡେ ଖୋସେ
ଧିଟ ଭଅଁର ତୋ ଗୁହ୍ୟ ଭାଷେ,
ମଲ୍ଲୀ ଅତର ଦେହସାରା ଘଷିଆ । ୨ ।

---

(୧୫୪)

—କହରବା—

ଛଳ ଛଳ ଆଖି କୋଣେ, ଜଳ ଛଳ ଛଳ
ଅଞ୍ଜଳି ପୁଲେ ଭରି,
କି ନେବ ଲେ ସଖି ! ଫୁଲ ଅବା ନୀର,
ଭାବ ନଶି ଦନ ସାରି ॥ ୦ ॥

ମନ ସୁତା ଡୋରେ ଗୁନ୍ଥା ସୁମନ,
ବିରହ ବାସନା ଦିଆ ।
କର ପସାରି ମୁଁ ଯେବଲେ ସେ ଫୁଲ
ଶୀତଳ ହେବ କି ହିଆ,
ଲଭି କି ଯିବ ତୋ, ଆଖି ନୀର ଧାର
ନ ରହିବ ଗ୍ଳାଭ ଭରି ? ।୧।

ନୟନରୁ ସଖି ! ଗଲେ ନୀର ଶୁଖି
ମିଳନେ ମାଧୁରୀ କାହିଁ ?
କି କରିବ ବୋଲି ଭାଳି ଭାଳି ତେଣୁ
ଆସେଁ ତୋ ଦୁଆରେ ଧାଇଁ,
ଫୁଲ, ଆଖି ନୀର, ଦୁହେଁ ସମତୁଲ
ମୋ ନୟନେ ଆରେ ଧରି !
ବିଧୁର ଯାହାକୁ ଦେବୁ ରେ ଛଇଳା
ସେଇ ମୋର ଶିର ଝରି ।୨।

—————

(୧୫୫)

—ଦାଦରା—

କୋଇଲି ରେ ! କାଳ ହେଲା ତୋ କୁହୁ ଡାକ,
ହଠ କଲପରି ଉଠୁ ଆସି ପାଶେ,
ମୋ ଠାରେ ଲାଗିଛୁ ଲାଖ ? ॥ ୦ ॥

ଗୁଡ଼ ଗୁଡ଼ ନାହିଁ ତନୁ-ଥରା ଶୀତ
ଡାକ ଡାକ ଆଣୁ ମହୁଆ ବସନ୍ତ,
ଏକେ ତ ଅସହ ବିରହ ଦୁରନ୍ତ,
ପକାଉ ଶିରେ ଚଡ଼କ । ୧ ।

ଯେ ଥିବ ଲୁହାରେ ବନାଇ ଛାତିକି
ତାର ତ ନ ଥିବ ବସନ୍ତ ରାତିକି
ମୁଁ ପରା ଅବଳା ନାରୀ, ମୋ ମଥାକୁ
ଭୁଞ୍ଜରେ ଏ କି ପରଖ ? । ୨ ।

ସପନ ନକର ଜଗା'ର ସପନ
ଆଶାୟୀ ନୟନେ ଆଶା ପରଶନ
ପଲକ ତଳରେ—ପଲକ ମିଳନ
ଥାଉ ମୋ ଜୀବନ ଯାକ । ୩ ।

---

(୧୫୬)

—ଦାଦରା—

ପରଦେଶୀ ଭ୍ରମର ରେ ! ଅନାଁଇ ଅନାଁନା ଫେର,
ତୋ କୁସୁମ ବାସ ଆସି ମଳୟ କଲାଣି ସ୍ୱେର ॥ ୦ ॥

ଓଢ଼ଣା ଉହାଡ଼େ ଯେବେ ଶୋଇଥିଲା ଫୁଲ ବଧୂ,
ଗୁଣୁ ଗୁଣୁ ଗାଇ କାନେ ଢାଳିଲୁ ସଙ୍ଗୀତ ମଧୁ ।
ଚେତିଲା, ଗୁହାଁଳା ଯେବେ ଚମ୍ବିଥିଲୁ ଘେରି ଘେରି । ୧ ।
ଜାଣି ନଥିଲା ସରଳା, ଭୁଲାଇ ତୁ ଯିବୁ ଚାଲି
କେତେ ରାତି ପାହି, କେତେ ଆସି ଖସି ଯାଏ କାଲି
ଆଜ ପୁଣି ଖୋଜୁ ତାକୁ, ତୁ ଯେ ତାର ଆଖି ବାଲି
କ ଲାଜେ ନିଲାଜ ! କହୁ—କୁସୁମ ରସିବ ବୋଲି ? । ୨ ।

---

(୧୫୭)

—ଦାଦରା—

ଚମ୍ପକ, ଆଜ କହୁଛି, ନୁହ ଅଭିମାନିନୀ ଲୋ । ୦ ।
ସୁନା ତନୁ ଚୂନା କରି—ବିନା ଅପରାଧେ ଗୋରୀ,
ଅନାଇଲୁ ନାହିଁ ଫେରି,
ନାଗରେ ତୁ, ଭାମିନୀ ଲୋ । ୧ ।
ଅକାରଣ ଗଲା ସିନା ଏ ଚୋ ଭରା ଯଉବନ
ଅକାରଣ ବେଶବାସ, ଦରହସା ଅକାରଣ,
ଆପେ ଫୁଟି ଝରିଲୁ ତୁ
ବିରହରେ ବଳିଲୁ ତୁ
ଗରବରେ ସରିଲୁ ତୁ ମିଛେ ସିନା କାମିନୀ ଲୋ । ୨ ।
ପାଶେ ନଦେଲୁ ବସାଇ ଆସେ ଯେବେ ମଧୁକର
ବାସେ ଆକୁଳ ପରାଣ—
ନିରାଶେ ଫେରେ ସେ ଘର

ସଞ୍ଜ ପନ୍ତ ରଖି ସିନା, ସାଇଛି ଲୋ ଚମ୍ପାବଣି
ତୋ ଜୀବନ ଯଉବନ ଆସେ, ଖସେ ଏ ତୋ ଗତି,
ମଳୟ ଆସି ମଉନେ—ଝାଙ୍କି ଦେବ ତୋତେ ଧନେ
ଝଡ଼ିବ କେଶ ପାଖୁଡ଼ା, ଝୁରି ସାରା ଯାମିନୀ ଲୋ । ୩ ।

———

(୧୫୮)

—କହରବା—

ନୟନ ଯେ ଛଳ ନତି ନଶି ଶେଷେ ହେବରେ
ବୁଝିବ କି ପ୍ରିୟ ! ଆସି ଖାଲି, ମୋତେ ଛଳେ ॥ ୦ ॥
ଚେତନ ଉପରେ ସପନ ଓଢ଼ଣା,
ଆଖି ପତା ତଳେ କରେ ବୁଝାମଣା
ତୁଇ ଗୋ ରୂପସୀ—ସ୍ନାହ୍ନାନକୁ ଆସି
ଖେଳୁ ମୋ ନୟନ ଜଳେ,
କେବେ ଭାସୁଥାଉ, କେବେ ବୁଡ଼ିଯାଉ
କେବେ ବା ଉପରେ ଚଳେ । ୧ ।

ଖଳ ଖଳ ହସି, ଆଡ଼େ ଚାହିଁ ଚାହିଁ,
ଲୁଚିଯାଉ କେବେ କେତେ କଥା କହି,
ଚହଲା ଚହଲା ପର ସପନ ପ୍ରିୟା ଗୋ !
ଲାଗେ ମୋର ମରମରେ,
ସେଚ୍ଛା ନା ତୁ ଆସି, ମୁଖ ଫେରାଇଲୁ
ଜୀବନ ବସନ୍ତେ ଥରେ । ୨ ।

କୁହୁ ଗାଇଥିଲା କୋଇଲି ତୋ ଲାଗି
ମୁରୁକ ହସିଛି ଫୁଲ କଢ଼ି ଜାଗି
ଧରା ଦେଇ, ଧରା ନ ଦେଲୁ ପ୍ରିୟା ଗୋ !
ମୋ ମନ ଧରିବାବେଳେ
ତୋ କାନ ଫଣିତ-ଚହଲା ବନ୍ଧୁରେ !
ଢଳିଯାଏ ଥରେ ଥରେ । ୩ ।

(୧୫୯)

—କହରବା—

ଏଥିଭଳି କଥା ମୁଁ କହିବ ନାହିଁ, ପ୍ରିୟ କହିବ ନାହିଁ ।
ଆଖି କୋଣ ଯାହା, କହେ ଆଗୋ ପ୍ରିୟ !
ତା ଯେବେ ବୁଝିଲ ନାହିଁ ॥ ୦ ॥
ମୁଖ ଫିଟା କଥା ଯେବେ ପରିଚୟ
ଶିଖିନାହିଁ ବନ୍ଧୁ ! ଡାକ ପ୍ରେମମୟ !
ମରମେ ମରମ ପରଖ ନକର
ପରଶ ଦେଇ କପାଇଁ
ସପନେ ମନ ଭୁଲାଇ । ୧ ।
ମନ ହଥା ନଥା—ନୁହେଁ ହ'ହନଆଁ
ଭୁଲାଇବ ତାକୁ ଗଢ଼ି କଥା କୁହା,
ଏ ମନ ନୁହଇ, କାଚ ଦରପଣ
ପଡ଼ୁଥିବ ଶତ ଛାଇ,
ଆସିବ, ହସିବ, ରସ ପରଶିବ
ଘଡ଼ିକେ ଘଡ଼ିକ ପାଇଁ । ୨ ।

(୧୬୦)

—ଦ୍ରୁତ-ନିତାଲ—

ହେର, ସଞ୍ଜେ ଫୁଟେ, ଫୁଲ କୁଞ୍ଜବନେ
ଘେର, ଭୃଙ୍ଗ ବୁଲେ, ଗେଲେ ଗୁଞ୍ଜରଣେ ॥ ୦ ॥
ଫେର ଫେର ଗୃହିଁ ଗୃହିଁ ମଳୟ ଘଲେ
କୁସୁମ ତା'ର ପିନା,
ଭର ମଧୁହାସ ମୁଖେ ଗୃନ୍ଦ ବଗୃରେ
ଏକା ସେ ତାର କଣା,
ନୁହେ ସେ କା'ର ଗୋ ! ଗୃହେଁ ନହାର ଗୋ,
ରହେ ଅନ୍ତର, ମନ୍ତର ଥାପି ମନେ । ୧ ।
ଠାର ଠାର ଆଖି ସେ ଯେ ଗଗନ ମୁଖେ—
ମଧୁ ମିଳନ ଖୋଜେ
ଘର ପଡ଼ବନ ଘର ନପାରେ ସହି,
ପଡ଼େ ଘୁମାଇଁ ଶେଯେ
ନଶି ସପନେ ଗୋ, ଅତି ଗୋପନେ
କହେ ମନକଥା ପବନେ, ନଭଜନେ । ୨ ।

---

(୧୬୧)

—ଦାଦରା—

ଯଦ ଆସେ ଫେର ସେ ବସନ୍ତ,
ଯଦ ବାସେ ମଳୟେ ଦଗନ୍ତ,
ଯଦ ଜାଗେ ରଜନୀ ଘୁମନ୍ତ ?
ସେ ଦନଟି ନ ଫେରେ କେମନ୍ତ ? । ୧ ।

ଶଶୀ, ମୁଖ ଛପାଏ ବାଦଲ
ସେତ, ପୁଣି ହସେ ଝଲମଲ
ବସି, ନଭେ ହସେ ଖଲ ଖଲ
ସେ ଦିନଟି ନ ଫେରେ କେବଳ । ୨ ।

ସଞ୍ଜ ତାଙ୍କୁ ପ୍ରଭାତେ ଲୁଚଇ,
ସଞ୍ଜେ ପୁଣି ସେ ତ ହସେ ଉଇଁ,
ଉଠେ ଘୁମାଇ ତ ସବୁ ଚେଇଁ
କାହିଁ, ତୁମେ ଫେରି ନ ଆସିଲ ? । ୩ ।

— — —

(୧୬୧)

— କହରବା —

ସୁନ୍ଦର ଯା' ଏ ଜଗତେ, ତୁ ଯେ ତାର ସୁନ୍ଦର
ସୁରେ ତୋର ବୀଣା ବାଜେ
ଛୁଇ ମୋର ଅନ୍ତର ॥ ୦ ॥
କଣ୍ଠ ତୋର ଏ ବସନ୍ତେ
ବନ୍ଦେ ପିକ କୁହୁ ରେ
ଲୁଚେ ବୃନ୍ଦ ମେଘ କୋଳେ
ଡାଳି ମାରି ଶିଶିର । ୧ ।
ଫୁଲ ହାସେ ନନ୍ଦେ ନତ
ବାସ ସ୍ୱେର ଭ୍ରମର,
ମାନେ ମୁଖ ମଞ୍ଜୁଳାଲୁ
ଗୃହିଁ ରୂପ ତୋହର । ୨ ।

ଏ ମରତେ ଏ ଜୀବନେ,
ଆଶ ନାହିଁ କାହିଁ ରେ
ଖୁଣ୍ଟି ଖୁଣ୍ଟି ରୂପ ତୋର
ଦେଖ ପ୍ରେମ ଚକ୍ଷେର ।୩।

— — —

(୧୭୩)

—ଦାଦରା—

ଜାଗି ଯାମିନୀ, ସଜନୀ !
ଝାପଟଲେ ଯାଏ ଗୋ ବଣ ମଧୁ ଝର ଗୃଧନୀ ॥ ୦ ॥
ଏଇ ତ ପୂରୁବ ଘନ ଛୁଇଁଯାଏ ଉଷା କାନ,
ପଞ୍ଚମ କୋଇଲ ଡାକେ ଶେଷ ତେଜ ମାନିନୀ । ୧ ।
ଫୁଲର ଅତର ଯେନ—ମଳୟ ତ ଫେରିଲାନ
କୁମୁଦିନୀ ମନକଥା ନୟନେ ନାଚଲାନି । ୨ ।
ଭଉର କହିବାହିଁ ପଶ ଲାଗିବ ମରମେ ବ୍ୟଥା
କବଣଶୀ କହେ ସଖି, ପାଶୋର କ ଗଲାନି । ୩ ।

(୧୭୪)

—କହରବା—

ଯାଉଛ ଥିଲୁ ଗୋ ଯେବେ,
ଅନ୍ତରେ କରୁଣା ଧାର,
କାଟିଲୁ କାହିଁକ ତେବେ
ଅନ୍ତରେ ଅନ୍ତର ଗାର ?

ଆଶାର ଆଶାପ୍ଥୀ ମୁଁ ଯେ,
ତୁ ଯେ ଗୃହକର ଧନ,
ଆଶା ଦେଇ ପୁଣି ତୁ ଯେ
ଫୁଲାଇଲୁ ମୁଖ ଧନ !
ଶର ସିନା ଫିଙ୍ଗିଦେଲୁ, ମାନସ କମଳ ଦଳ । ୧ ।
ଏତେ ଯେବେ ଥିଲା ମନେ
ଦୂରେ ରଖି, ଥିବୁ ଦୂରେ,
ଖେଳବୁ ତୁ ଖେଳାଇ ଗୋ !
ସପନେ ଭୁଲାଇ ମୋତେ
କବଣଶୀ ପକ୍ଷରେ ଗୋ, କେ ଦେଲା ନୟନେ ଜଳ ? ।୨।

---

(୧୬୫)

—ଦାଦରା—

ପରଶ କା'ର ସେ ଲାଗେ
ବାତାୟନ ଠେଲି କିଏ ଗୋ ସତେ ମୋ,
ନଣି ଅଧେ ଛୁଆଁ ମାଗେ ।
ଥିର ଥିର ଚହଲାଇ, ବୁକୁରେ ବୁକୁ ମିଳାଇ
ଗେଲାଇ ତନୁରେ ଆସି, ଢଳିଲା ତନୁ ସରାଗେ । ୧ ।
ସପନର ସାଥୀ ମୋର, ମତ୍ତ ଭୁଲା ସ୍ମୃତି ତାର
ପଦ୍ମକଥା କେତେ ଚେତ, ଉର ନଣି ସାଗ ଜାଗେ ।୨।
ସେଦିନ ନାହିଁ ତ ଆଜ, ସାଧିଲା କିଏ ସେ ଦାଉ
ପଦ୍ମରୁଛୁ କହ ସନ୍ଧ ! କି ଫଳ ଏ ଅନୁରାଗେ ? । ୩ ।

---

(୧୬୬)

—ଦାଦରା—

ଭୁଲିମନେ, ଭୁଲିମନେ, ଭୁଲି ଭୁଲେନା
ଫୁଲ ବନେ, ଫୁଲ୍ଲମନେ, ଫୁଲି, ଫୁଲେ ନା ॥ ୦ ॥
ସଜଳ ନୟନେ ଚାଇ, ପଛ ଫେରି ଅନାଉଣୀ
ମଦ-ଭରା ଆଖି ଠାରି, କହେ କଥା ଅପାଶୋରା,
ଛଟକେ ଅଟକେ ପାଦ ଝୁଲି, ଝୁଲେ ନା । ୧ ।
ସେଦିନ ମେଘରେ ଥିଲା, ଏକୁଟିଆ ତରା ଚାହିଁ,
ବଉଦ ଉହାଡ଼େ ଜହ୍ନ ଲୁଚୁକାଳି ଖେଳୁଥାଇ,
ମନ ତଳ ଲେଖା ଭାଷା, ଦେଲା ସତେ କେତେ ଆଶା ।
ଅଣବଦ କଥା ସେ ଯେ, ବୋଲି, ବୋଲେ ନା । ୨ ।
ଅମାନିଆଁ ପବନଟା ଝୀନ ବାସ ଦେଲା ଉଡ଼ି,
ଦର ଫିଟା କରିଦେଲା ସାଇତା କମଳ କଢ଼ି,
ତଳିଗଲା ଆଖିପତା—ବଳିଗଲା ଲାଜ କଥା
ପଶୁରିଲି କି ହେଲା ଗୋ ! ଗେଲେ, ଗେଲେ ନା । ୩ ।

— — —

(୧୬୭)

—ଦାଦରା—

ଡାକିଲା କଜଳ ପାତି—ସାଥୀ ! ପାହେ ରାତି ॥ ୦॥
ରସିଆ ନାଗର ଅଳି—ଆସେ ଚଳି ଚଳି
ରାତିଟି ସାରା ସନ୍ଧ୍ୟ ! ସନ୍ଧ୍ୟ ବିରହ ଚାତି,
ତୋ ଲାଗି ମାନିନୀ ଲୋ ! ଜାଗରେ ଯାଇଛି ରାତି । ୧ ।

ଗୋପନେ ଫୁଲ ବନେ, ଫୁଟିଲ୍ଲ ଫୁଲ ମାଳତୀ
କମଳ ଆଖି ମେଲ ଚେଇଁଲ୍ଲ ଶେଜ ସୁପାନ୍ତ । ୨ ।
ଆଜ କ ସାଜେ ଲୋ ସଖି ! ଥିବୁ ତୁ ଗୁମାନବନ୍ତୀ,
ପଥର କରିବୁ ଗ୍ଳାନ୍ତ, ସହିବୁ ସ୍ୱଚ୍ଛୂ ଭରନ୍ତି । ୩ ।

———

(୧୬୮)

—ଦାଦରା—

ଦିନେ ଫଗୁଆ ଗୋଧୂଳି ଲଗନେ,
ଫଗୁଆ ଅରୁଣ ପିଚକାରୀ ଧରି
ଫଗୁ ଖେଳୁଥିଲ୍ଲ ଗଗନେ ॥ ୦ ॥
ତଳ ତଳ ନୀର ସରସୀ କୂଳରେ
ସ୍ୱପ୍ନେ ବସିଥିଲ୍ଲ ଏକା ଗୋ,
କୁଞ୍ଜ ଉହାଡ଼େ, ଗୋଲାପ ଫୁଲଟି,
ହସି ହସି ଦେଲ୍ଲ ଦେଖା ଗୋ,
ଅଜାଣତେ ଗଲ୍ଲ ଦୁହିଁର ଆଖି ମିଳି
ସରମ, ଚିବୁକେ ଫଗୁ ଦେଲ୍ଲ ବୋଳି,
ଅଧରୁ ବାହୁଡ଼ ଅଧରେ ରହିଲ୍ଲ,
ଅଧା କୁହା ଯାହା ଜୀବନେ ।୧।
କପୁଡ଼ ଦେଲ୍ଲ କି ମାୟା ଧୂଳି,—
ଛାରି, ସରମ ବୋଳା ସେ ହସଟି
ଅଜାଡ଼ ଦେଲ୍ଲ କି ସରଗ ସମ୍ପତ୍ତି
ତା ତନୁ ମହୁଆ ବାସଟି ?

ଚକଟେ ଛଇଳୀ ଗୁଳି ଗଲାବେଳେ
ସଜ ଗଣ୍ଡା ଫୁଲ ଫିଙ୍ଗି ଦେଲା ତଳେ,
ଥମକେ ସୁମରି ସେ ଦିନ, ସେ କଥା
— ସେଇ ସଞ୍ଜ ମଧୁ ଲଗନେ । ୨ ।

—✲—

(୧୭୪)

—ଦ୍ରୁତ-ଖିଆଲ —

**ସେ** ପଥେ କଣ୍ଟା, ଫୁଟିବ ପାଦେ, ରେ ସଜନ, ଯା’ ନାଁ ।
ରେ ସଜନ ! ଯା’ ନାଁ ।,
ପୀୟୂଷ ମଣି, ବିଷଫଣା ତୁ, ନବ ଛଇଳା, ଖାଁ ନାଁ ।,
ରେ ସଜଣ ଯା’ ନା ॥ ୦ ॥

ସେ କୁସୁମେ କୀଟ ଭରି
ସେ ମାଦକ ଦିଏ ଧାର,
କଜଳ-ନୟନ—ଭରିଯିବ ବନ,
ବାଧିବ ଅଙ୍ଗେ, କୁସୁମ ଶୟନ,
ବିପଥେ ଭୁଲି, କରୁଣ ରାଗେ, ମରମ ଗୀତି ଗା’ ନାଁ
ରେ ସଜନ ! ଯା’ ନା ।୧।

ଲୁଟନ୍ତି ଲୁବ୍ଧ, ସେ ହସ ତଳେ
ଭଉଁରୀ ଖେଳେ, ସେ ମାଳ ଜଳେ,
ଗରମ ଲାଗିବ ନରମ ପବନ,
ଶରଦ ଚନ୍ଦ୍ର, ଚନ୍ଦନ
କ୍ଷଣ ଦିଏଁ ମୁଁ ପରାଣ ସାଥୀ, ଭୁଲି, ଭୁଲି ଚା’ ନା’
ରେ ସଜନ ! ଯା’ ନା । ୨ ।

———

(୧୭୦)

—କହରବା—

ସ୍ତ୍ରୀ— **ମ**ଧୁ ସଞ୍ଜରେ ଭ୍ରମର ଗୁଞ୍ଜନ ଦେ,
ମଞ୍ଜୁ କୁନ୍ଦ କୁଞ୍ଜରେ ଚନ୍ଦ୍ରିକା ଉଦେ,—
ସଞ୍ଜରେ ଭ୍ରମର ଗୁଞ୍ଜନ ଦେ ॥୦॥
ପୁ—ନାହିଁ ସେ ଫୁଲେ ଦରଦରା ହାସ
ନାହିଁ ଗନ୍ଧ ବିଳାଶ,
ମଦଭର ନୟନେ—ଫୁଲ ହସ ବଦନେ
ନାହିଁ ତ ରଙ୍ଗ ବିକାସ,
ବନ୍ଧୁଆ !
ପ୍ରୀତି ଅଞ୍ଜନ ଦେ, ।୧।
ସ୍ତ୍ରୀ—ବିରହ ଫୁକାରି-ଫୁଲ ବନସ୍ତୁଷି
କୁହୁ କୁ’ ଉଚାରି-କରେ ମନ ଘାରି
ବିତି ଯାଏ ସତେ ଗୋ ! ଗୃହମା ଯାମିନୀ,
ଅନୁରାଗ ରଞ୍ଜନ ଦେ
ବନ୍ଧୁଆ !
ପ୍ରେମ ଅଞ୍ଜନ ଦେ ।୨।

———

(୧୭୧)

—କହରବା—

ଗା’ନା ଫେରି ତୁ କୋଇଲି ! କୁହୁ ଉହୁ ଗା’ନା ରେ
ଝୁରିନା, ନଗାନା ଝୁରିରେ, ମନ ଘେରାନା ରେ ॥୦॥

ମାନିନୀ ଗୃହିଣୀ କୁଞ୍ଜେ ଘୁମାଏ,
ଜାଗରେ ଯାମିନୀ ବିରହେ ବିତାଏ,
କାନେ ଶୁଣାନା, ପରଦେଶୀ ନାଁ ରେ ।୧।
ଘାରେ ମରମେ—ସରେ ସରମେ
କାନନେ କାନନେ କୁସୁମ ମତାଏ,
ପାଶୋରା ମନେ ତା' ବନ୍ଧୁଆ ଚେତାଏ
ମାନେ ସରେ ସେ ନବନବୀନା ରେ
କୁହୁ କୁହୁ ଗା'ନା ରେ ।୨।

---

(୧୭୨)

—କହରବା—

ତୋର ଦକ୍ଷିଣା ଫେରି ଆରେ
ଗୋପନ କଥା—ଗୋପନ କଥା,
କାନେ କାନେ ତୁ ଶୁଣି ଯା' ରେ ।।୦।।
ଅଧା ରହିଲା ମୋର, ବଉଳର ଗୁନ୍ଥାହାର
ଅଧା ଅଧା କହିଲା, ଭୁଲିକଥା କଣ୍ଠ ମୋର
ଅଧା ଅଧା ଚେଇଁଲା, ଏ ପିଆସୀ ଆଖି ଲୋର
ଥରି ଉଠିଲା ପ୍ରିୟା ଗୋ ! ଏ ମୋର ଝୁରୁ ହିଆ ରେ । ।
ସେ ଦିନ ଚନ୍ଦ୍ର ଥିଲା, ଚାହିଁଥିଲେ ଲକ୍ଷ ତାରା
ଶୁଭିଲା କୁଞ୍ଜ କୋଣେ, କୋଇଲି କୁହୁ ଠାପରା
ମଉଳି ଝରୁଥିଲା ତଳପେ କୁସୁମ ଝରା
କେବେ ଫେରିବୁ ସତେ, ବଶୀଥେ ଏକା ଦୁଆରେ ।୨।

---

(୧୭୩)

—ଦାଦରା—

ଭୁଲି କି ମନଚୋର ! କୁଞ୍ଜବନେ, କୁହୁ ଗାଇଲୁ ?
ଅଚିହ୍ନେ କି ମନେ ସତେ, ଫେରି ଚାହିଁଲୁ ? ॥୦॥

ତୋ ବିନା ସୁମନା ମନେ—ସୋହାଗ ନାହିଁ ସପନେ,
କେକରି ପାଶୋରି, ଭୁଲି—ମନ ରହିଲୁ ।୧।

ଆଜ ରେ ଆସିଛୁ ଫେରି, ସତେ କି ବସନ୍ତ ଚୋରି
ପଞ୍ଚମରେ ମୁରଲୀରେ ସୁର ଧରିଲୁ ।୨।

ଆଶାର ଆଶାରେ ରହି—ନୟନେ ପଲକ ନାହିଁ,
ମଉଳାଇ ସୁମନେ କି ସୁଖ ପାଇଲୁ ।୩।

— — —

(୧୭୪)

—ଖେମଟା—

ବସନ୍ତ ରେ, ବସନ୍ତ ରେ, ବସନ୍ତ ରେ
ସରସ ପରଶେ ଗୃନ୍ଦ—ବଉଳ ତଳେ ଆନନ୍ଦ
ହସି ହସି ଲୁଚକାଳି ଖେଳେ—
ମଧୁକରେ ମଧୁ ଭରେ ॥୦॥
ଜଉଘାସ୍ତୁ ମୋ ଅଙ୍ଗ, ମଳୟ ଚୋର କରନା
ଲଜୁଆ ନୟନ କୋଣେ, ଫୁଲ ରେଣୁ ତୁ ଭରନା
ନବ ଯଉବନ ମୋର
କୁହୁ ସୁରେ ଥର ଥର

ଦେହର ପବନ ବହଇ
ହିଆ ଚମକ ଉଠଇ
ମରେଁ,— ମରମେ ସରମେ ସତେ,
ଏ ବିରହ ଦୂରନ୍ତରେ ।୧।

— — —

(୧୭୫)

—କହରବା—

ଜୋଛନା ହାସେ, ନବୀନ କୁଞ୍ଜେ
ଏକଲା ପ୍ରାଣେ କାଟେ ଗୋ,
ଉଠ, କଥା କହ, ଉଠ ଗୋ ! ସାଥୀ
ବୁକୁଟି ସାର୍ ଫାଟେ ଗୋ ॥୦॥
ସରଗ ଦେଖୁଁ, ଅମଳ ଏ ଜ, କମଳ ରାଣୀ କୋଳେ—
ଅଳସ ଘୁମ, ଶିଥିଳ ଅଙ୍ଗ, ବାହୁର ମାଳା ଡୋଳେ,
ଉଠ, କଥା କହ, ଉଠ ଗୋ ସାଥୀ !
ଏକଲା ଭାଙ୍ଗି ପଡ଼େ ତ ଗୁନ୍ତ,
ମରଦ କାନ୍ଦେ,—ମରମ କାନ୍ଦେ,—
ସାଇତ ଝୁରଇ ମୋର ଆଖି ପଟେ ଗୋ । ।୧।

— — —

(୧୭୬)

—କହରବା—

ଏ ଭରା ଶଶୀ ହସୀଥିବେ, ଅସରା ସୁଗନ୍ଧରେ
ନୟନେ ଜୀବନ୍ତ ଲେଖି, ଗଲା କରି ଅନ୍ଧ ରେ ॥୦॥

ଚୋଳିଲି ଦେଉଳ ନିତି,
ଜାଳିଲି ପ୍ରୀତି ଆରତି
ଦେବତା ଫେରିଲ ନାହିଁ, ମୋ ଦୁଆର ବନ୍ଧରେ ।୧।
ଶରତ ଶୀତ ବସନ୍ତ
ଭରିଲା ଜଗ ଜଗନ୍ତ
ଫେରିଲା ନବଘେ କେତେ,—ଯେଜି ତା ଆନନ୍ଦରେ ।୨।

---

(୧୨୨)

—ଝୁଁପ—

କେ'ସେ ଲୁଚିଲ ଡାକ, ଆସ ବୋଲି କାହିଁ ଗୋ !
ଦୁଆର ମେଲିଲି ଯେବେ କେହି ନାହିଁ ନାହିଁ ଗୋ ।।୦।।
ଏ ଘନ ନିଝୁମ ରାତି–ଦୁରୁ ଦୁରୁ କରେ ଛାତି
ଅନ୍ଧାରେ ଲୁଚିଲ ତୁମେ, ବାରେ ଡାକ ଦେଇ ଗୋ ! ।୧।
ମନର ମିଳନ ଆଶା, ମନରେ ରହିଲା ମୋର
ରହିଲା ତ ଗୁନ୍ଥା ଏ ମୋ ହାତେ ପ୍ରେମ ଫୁଲହାର
ମରମେ ରହିଲା ଗୀତ,—ସପନେ ବୁଡିଲା ରାତ୍ର
ଭରିଲା ନୟନେ ବାରି, ତୁମ ପଥ ଚାହିଁ ଗୋ ।୨।

---

(୧୨୮)

—ଖେମଟା—

ଗୋପନ ମନ କଥା, ଫୁଲ କହି ଦେ, କାନେ କାନେ
ମଉଳି ଯିବ ଖାଲି, ମିଛେ ରହି ମାନେ ମାନେ ଗୋ ।୦।

ଚନ୍ଦ୍ର ପାଶେ ଶୋଇ,
ଗୃହିଁ, ତାଗ୍ର ମାଡେ ହାଇ
ଉଦୁଆଁ ରୈବ ବାଆ ହଏ ମରମ ଚହଲାଇ,
ରୈର, ମଧୁପିଆ ଟା ବୁଲେ ଯିନା ମନଚି ତା'ନମାନେ ।୧।
କେଶର ମଖା କୁଞ୍ଜ
ବଟେ, ମଧୁ ଲଗନ ସଞ୍ଜ
ମିଛେ ମରମ ବ୍ୟଥା-ହଅ—
ଆଜ କାହିଁକ ଲଜ ଲଜ ?
ମୁଖ ନ ଫିଟୁ ପଚ୍ଛେ ଚୋର—
କହ ନୟନ କୋଣେ କୋଣେ ।୨।

— — —

(୧୭୯)

—ଖେମଟା—

**ମୋର**, ମରମେ ମରମେ ମୁରଲୀ ବାଜଛୁ ସଜ୍ଜ !
ସରମ ଜଡ଼ିତ ଚରଣ ଛନ୍ଦ ଦେଇ ।୦।
କଜଳ ବାଦଲ ବଜୁଳୀ ଚମକ ସେ ଗୋ,
ବଧୂଲ ବଧୂର ମଧୂର ଅଧର କ ଗୋ ?
ବରହ ନୟନ,—ଅଶ୍ରୁ ଧାରଚି ଧୋଇ ।୧।
ବଜନ ବପିନେ କୁହୁ ସେ କ ଶଣୀ ଭୁଲେ
ପଥ ର ପଥିକ ଆନ ମନେ ପଥ ଭୁଲେ,
ହତାଶ ବତାସ ନାଚେ ସତେ ତାତାଥେଇ
ଅଧୋମୁଖେ ଫେରେ ଗୋପନ ବେଦନା ନେଇ
ଅଭିସାରକାର ଚୁମ୍ବନ ଗୁପ ଗୃହିଁ ।୨।

— - —

( ୧୮୦ )

—ଏକତାଲୀ—

**ସେ** ଯେ ନୟନ ମୁଦଲେ ପାଶେ ଆସେ
ନୟନ ମେଲିଲେ ଦୂରେ ଦୂରେ ଅପସରି ବସେ ॥୦॥

ନିତି ଆସେ ନିଶି ଅଧେ
ସପନେ ଆସଇ ନଦେ,
ଝଙ୍କାଣିରେ ଭସି ଆସେ ମୁରଲୀ ଶବଦେ,
ଗୋପନେ ମୋ କାନେ କାନେ, ମୋ କଥା କହେ ମୋତେ ସେ ।୧।

ଶରତ ଜହ୍ନର କୋଳେ,
ସେଇ ଶିଶୁମୁଖ ଖେଳେ
ସେ ଯେ ଲୁଚି ବୁଲେ ପୁଣି ଲହରୀ ଗହଳେ,
ବସନ୍ତର ଶୋଭା ସଜ ମଳୟର ବାସେ ।୨।

———

(୧୮୧)

—ଅଧା—

**ଯେ** ଶରଗଲେ ଯା' ଯା'ରେ
ବାସିହେଲା ଫୁଲଶେଯ, ଥରେ ଶୁଙ୍ଘି ଯା' ॥୦॥

ନଦି ଆସି ପାଦେ
ଶୁଣ ତ କୋଇଲି ଗାଏ
ଚାପର କଲିଣି ଉଷା ହସି ହସି ଯା' ।୧।

ବସି ବସି ପଥ ଗୃହିଁ,
ମୋର ତ ନୟନେ ନାହିଁ
ସମତଣୀ ସଙ୍ଗେ ଭୁଲ, ରସିଆ ରାଜା ।୨।

ଠାବ ନାହିଁ କୁଞ୍ଜେ
ନିତି ଗୁରୁଜନ ଗଞ୍ଜେ
ଯମୁନା ସେପାର ବସି—ବଇଁଶୀ ବଜା ।୩।

———

(୧୮୨)

—କହରବା—

ନୀରବ ନୟନ କଥା, ନୀରବ ମରମ ବ୍ୟଥା
ଭାସି ଯାଉ ନୀରବେ ଗୋ'—ନୀରବ ନୟନ ଧାରେ ।।୦।।

ବିମଳ ସରସୀ ଜଳ
ଯେବେ ପୂଜା ଶତଦଳ
ଶତ ଚୁମ୍ବନ ଭୁଲେ, ପରଶି ସେ ପଦ ମୂଳେ
ଅଶ୍ରୁ ମୁକୁତା ହାରେ, ଭେଟ ପ୍ରେମ ପୂଜାଶ୍ରୀ ରେ ।୧।

ପ୍ରଦୀପ ବସିଛୁ ମୁଁ ଗୋ ଜାଳ !
ପୂର୍ଣ୍ଣ କର ଗୋ ! ପୂଜା ଥାଳୀ
ପ୍ରେମ ପୂଜାରଣୀ, ଆସ, ଆସ
ଭଗ୍ନ କୁଟୀର ଦ୍ୱାରେ—ନୀରବେ, ନୀରବେ, ନୀରବେ ।୨।

———

(୧୮୩)

—କହରବା—

ମୁରୁଖ ମନ, ଭୁଲ ଯା'ନା ଭୁଲ ଯା'ନା ॥୦॥

ପ୍ରେମ ନଗର ପରଦେଶୀ ରେ ମନୁଆଁ !
ହ୍ୱାଆ ଦୁଆରେ ଧାଉ ତୁ ନ ବୁଢା
ପ୍ରେମ କୁଞ୍ଜେ ଯଦି ଫୁଲ ନଫୁଟେ,
ବନବାଟେ ତୁ ଅନାନା (ମନ) ।୧।

ପ୍ରେମ ନୟନ ଯଦି ଢାଳେ ଦର ଦର ବାରି
ମରମେ ମରି ମରି ଯାଏ ମନ ଫୁଲବାରି
କଣ୍ଟ ପଡେ ତୋ ଜୀବନ ଯିବ ତୁ, ପ୍ରେମ ବନ୍ଧନ ତୁଟାନା ।୨।

ଜନମେ ଜନମେ ତୋ ମେ ଯେ ମରମର ସାଥୀ,
ପ୍ରେମ ଜୀବନ କି, ଜାଣେ ଜାତି ଅଜାତି
ପ୍ରେମ ଚରଣ ଯୁଗ୍ମ ଅନୁସରି ତୁ, ଯା' ଯା ପ୍ରୀତି ଲଭାନା ।୩।

---

(୧୮୪)

—ଦାଦ୍ରା—

ଡାକେ ଭରତଆ ସପନ ସଙ୍ଗୀ ଚେତାଏ
ଫୁକାରି, କେ ମଧୁରେ କୁମାରୀ ଲାଜ ଭୁଲାଏ ।୦।
ଝଲକେ ଛବିଟି ଦିଗ ଦିଗନ୍ତେ,
ବାସ ଝରି ଏ ମନ ବସନ୍ତେ
କେ ସେ ଗୀତଟି ଗାଏ ।୧।

ନୟନ କି ଭୂଲି ଗୃହମଗ ମାୟା
ଦେଖେ ସପନେ ଶତ ସୁନ୍ଦର କାୟା
ଏ ସୋର କଥା କେ ବତାଏ ।୨।

କେ' ସେ' ଜାଗେ — ନିତ ନବ ରାଗେ,
ଭୂଲି ଅନୁରାଗେ — ଗାଇ ନବ ରାଗେ,
ତିଆଗୀ ମନ କେ ମତାଏ ।୩।

— — —

(୧୮୫)

—କହରବା –

**ହେ** ଦେବତା—
ଚରଣ ତଳେ, ଦେଲି ମୁଁ ମେଲି ସଞ୍ଚି ବଳତା ॥୦॥

ଅଶ୍ରୁ ମଖା ପ୍ରଦୀପ ଶିଖା
ଜଳୁ ଲିଭୁ ବା, ତୁମେ ଜାଣ ତା—ଦେବତା
ଆଶା କୁସୁମେ କେତେ ଗୁନ୍ଥି ମାଳ
ଥିଲି ମାନସେ ଦେବି ଢାଳ
କିଏ ଜାଣେ ଗୋ, ଝଞ୍ଜା-ଝଡ଼
ଦେବ ସେ ଫୁଲ ଧୂଳି ଦଳିତା ।୧।

ଯେବେ ଚରଣ ତାର
ନୁହେ ଶରଣ ମୋର,

କଏ ମରମେ ମୋର
ଦେଲା ଲେଖନ ଗାର
ଜୀବନେ ନପାରିଲି କଳି ତା ।୨।

— — —

(୧୮୭)

—କହରବା—

ମରମେ ଯଦି ଗୋ ବାଜେ
କର କଙ୍କଣ ବାଣି,
ସପନେ ଯଦି ଗୋ ଗାଜେ
ବିଗତ ମରମ ବାଣୀ ॥୦॥

ମଧୁ ଗଣ୍ଡ ଯୁଗଳ ଧୁଅନା ପ୍ରିୟ
ନୀରବ ନୟନ ଧାରେ,
ଅନ୍ତର ତବ ଭରନା ଆଜି,
ତପତ ବେ'ଦନା ଭାରେ,
ଆକାଶେ ସେ ପରକାଶେ
ରାକା ଶଶୀ ତାଙ୍କପାଶେ
ଅଙ୍କ ମହକ ଭୁଲେ ସମୀର ପରଶିଲାଣି ।୧।

ମଧୁ ମାସେ କୋଇଲି କଣ୍ଠେ
ନଥି ଚଉ ବାଲ୍ ଉପକଣ୍ଠେ,
ତାହାର ଚେତନ ଗୁଇ, ବାଲିଘର ବାନ୍ଧି ଦେଇ
ଫେର ତ ସ୍ୱପ୍ନେ ସେ ବନ୍ଧୁ—ନଇମାଝି ଆଣି ପାଣି ।୨।

— — —

(୧୮୭)

—ଦାଦରା—

ଲିଭି ନାହିଁ ଶଶୀ ଲେଖା—
ତଥେ ଗୋଟି ଗୋଟି ତାରା,
ଉଷାର କିଶୋର ଭାଲେ—
ଫାଟି ଚ ନାହିଁ ସିନ୍ଦୁରା ॥୦॥
ପଲ୍ଲବ ଗୁଣ୍ଠନେ, ସଜାଇ ଶେଫାଳି କଳି
ଶେଷ ଚୁମ୍ବନ ତାର ଦେଇ, ଦେଇ ନାହିଁ ପରା ! ।୧।
ମ ଦେଉ କମଳମା—
ଅବଧି ହେବରେ ଯାମିନୀ
ଜଳ ନାହିଁ ଦୀପ ଶିଖା—
ଗୁନ୍ଥି ନାହିଁ ତ ମାଳା ।୨।
ଆଶାରେ ଆଶାରେ ସତେ—
ଅନ୍ଧାର ନଶି ବତେ
ନୟନଟି ଖାଲି ହେବରେ—
ବରଷର ନୀର ଧାରା ।୩।

———

(୨୮୮)

—କହରବା—

ଯାଦ ଭରମେ ଦେଲି ଗୋ,—ମାଳାଟି ନଅନା ଫେରି,
ସେବନ ନଶୀଥ ମୋର—ଅମାର କଜ୍ଜଳ ଘେରି
ସେ ଟିକ ନଅନା ପ୍ରିୟ !
ସେତିକ ଥାଉ ମୋହରି ॥୦॥

ମଉଳା କୁସୁମେ ଖାଲି
ଫେରାଇ ନ ଆନା ବନ୍ଧୁ,
ଧୋଇ ଦେବ ସାଇତିଛି, ନୟନେ ନିହାର ବିନ୍ଦୁ
ଝର ନିଃଶ୍ୱାସେ ଘାରି ।୧।
କରରେଁ ଲାଗିବ ଯେବେ
କଳଙ୍କର କଳା ଗୁଣ୍ଡି,
ଚରଣ ନଖାଗ୍ର ପ୍ରିୟ !
ଅଖୋଜା ସେ ଯାଉ ରହି,
ଆଜି ଘନ ଦୁର୍ଦ୍ଦିନ ରାତ, ମୋର ସାଥି ପର ।୩।

---

(୧୮୯)

—ଦାଦରା—

ଝଁସା ଗୋଲାପର ଝରା ବନ୍ଥି କେତେ
ଖରା ତରା କଳ କାଟିବ ଗୋ ।।୦।।
ଶିଶିରେ ଯଦି ଗୋ ଫୁଲଟି ଫୁଟିବ
ବାରି ବିନା ଯଦି ଗୁଚ୍ଛକ ରହିବ
ଶଶୀ ତେଜ ଯେବେ କୁମୁଦ ହସିବ,
ଏ ଜୀବନ ସତେ ଯାପିବ ଗୋ ।୧।
ବେଣୀଝଁସା ସେ ତୋ କୁସୁମରେ ଧନ୍ୟ !
ମଣି ପରି ମଣି ଶିରେ ଅଛି ସେନ
କେବେ କୁ ହସିବୁ, ଆଶା କୁମୁଦନୀ !
ଜନମ ସଫଳ ମଣିବ ଗୋ ।୨।

---

(୧୯୦)

—କହରବା—

ମନ ମଞ୍ଜୁଳ ବଞ୍ଜୁଳ କୁଞ୍ଜେ
ଆଜ, ବନ୍ଧୁର ମଞ୍ଜିର ଗୁଞ୍ଜେ,
ଗୁଞ୍ଜେ, ଗୁଞ୍ଜେ, ଗୁଞ୍ଜେ ॥୦॥

ବନର କୁସୁମ ବାସେ – ଶୁଭ ମଧୁ ମଧୁମାସେ
ଶଶୀ କର ଦରହାସେ – ମଧୁକର ଗୁଣୁ ଭାଷେ
ସପନ କହେ ମୋ କାନେ—ମରମ ଭରମ ଗାନେ
ସେ ମୋର ଆସିବ ଆଜ, ଫୁଲ ବଧୂ ସାଜେ
ମଞ୍ଜୁଳ ବଞ୍ଜୁଳ କୁଞ୍ଜେ ।୧।

(୧୯୧)

—କହରବା—

ସଖି ! ତୁ ଥବୁ ସାକ୍ଷୀ
ମୋର କା'ଲାଗି ଭରୁ ଆଖି
ଯାଚଣ ବିଷ ନଶା ପୀୟୂଷ ବୋଲି ଚାଖି ॥୦॥

ପବନେ ପାଶ ବାନ୍ଧି,
କି ହେବ ଆଶା ଫାନ୍ଦି,
ଜଳୁଛି ଦୀପ ଶିଖା
(ଆଜ) କି ହେବ ମଧୁ ମାଖି ? ।୧।

ଛିଡ଼ୁଛି ଫୁଲ ହାର
ଶୁଖୁଛି ପ୍ରୀତି ଡୋର
ଫେରୁଛି ଯା'ର ଦ୍ଵାରୁ
(ଆଜ) କି ହେବ ତାରେ ଡାକି ? ।୨।

(୧୯୨)

—ଦାଦରା—

ଗଢ଼ିଲା କଣ୍ଟକେ ବନ୍ଧୁ ମୃଣାଳେ,
ଫୁଟିଲା ପଙ୍କଜମା ପଙ୍କ ସରେ ॥୦॥

ବାସ ଭରା କେତକୀ—କୋଇଲି ଅଳି ଲାଗି
ଝୁରିଲା ନିରମାଖୀ ଅନାଦରେ ।୧।

ଶଶୀରେ ଶଶରେଖା, କା' ଲାଗି କିଏ ଲେଖା
ଚନ୍ଦ୍ରକ ଗୁନ୍ଥା ପୁଣି ଚପଳାରେ ।୨।

ଚାତକୀ ଆଶାଧାରା—ଘନରେ ଭରା ପରା
ତା ତନୁ ଜଳେ ରବି ଖର କରେ ।୩।

———

(୧୯୩)

—କହରବା—

ମନେ ପଡ଼େ ଆଜ ଗତ ବସନ୍ତର
ତୁମ ଅଭିମାନ କଥା
ଧୂପ-ଛାୟା ତଳେ ସେଇ ମୁଖ ଫୁଟି
ଆଙ୍କିଯାଏ କେତେ ବ୍ୟଥା ॥୦॥

ସୁଧା ମଖା ସେଇ ଆଖି
ତହିଁ ଜଳଧାରା ଲାଗି
କଣର ଦରଣୀ ହାର ସତେ ପରା
ଲୁଆଁଇଲା ଲାଜେ ମଥା ।୧।

ନିତ ନିତ କେତେ ପଥ ରହେ ଗୁଣ୍ଠି
ଶୁଣାଇବ ମନ ଗୀତ
ରାଜରାଣୀ ତୁ ଯେ ଭେଟିବ ମୋରକେ
ପ୍ରୀତି ଫୁଲ ଶତ ଶତ ।
ରହି ମିଛେ ପିନା ରାଣୀ !
ଦୂରେ ରହୁ ଅଭିମାନୀ !
ଦରଶ ପରଶ ଝୁରି ଜାଗିଛୁ ଗୋ, ନିଦ ଭୁଲି ଆଖି ପତା ।୨।

—·—·—

(୧୯୪)

—କହରବା—

ଭିନ୍ଦ୍ରାହାର ଆଖି, ଝରେ ବାରି ଧାର
ମିଛେ ଆଶା, ଆଶା ଦେନ ମୁଁ ଯେ (ଖାଲି) ସପନ ବିଭୋର ॥୦।

ଚନ୍ଦ୍ର ଭୁଲେ ଖେଳା ରଚେ ଚକୋର ପିପ୍ପାସୀ
ମୁଁ ଯେ ମରେ, ସେ'ଯେ ଦୂରେ, ଚିର ପରବାସୀ
ଲକ୍ଷ ପଥ—ଲକ୍ଷ୍ୟ ହାର
କେଜାଣି କ କହେ ମୋରେ ଆଖି ଠାରି ପର ।୧।

ଚିତ୍‌ଚିଭଟି ସାଥୀ ମୋର ମୋ ବାଣୀ ତା ସୁରେ
ଫୁଟି ଉଠେଯାଏ ଭସି ଦୂରେ—ଅତି ଦୂରେ,
ଆଶା ରହେ :—ଆସିବ ସେ
ଗୁଞ୍ଜି ନିଦ କାନ ତଳେ ସପ୍ନ ଢଏ ଧର ।୨।

ସୁନା ଘରେ ହୀରାଫୁଲ ଫୁଟି ଫୁଟି ଯାଏ
ମରୁ ଚରେ ମରୀଚିକା ଖେଳି ବୁଲୁଥାଏ
ନିତ ଗୀତେ—ନଶି ପାତେ
ଦୂରେ ଥାଇ ଦେଖେ ସବୁ ଏକା କୁଆଁ ତାରା ।୩।

— — —

(୧୯୫)

—ଦାଦରା—

ନବ ବସନ୍ତ କହିଗଲା ଗୀତ୍ ଅତିଥି ଆସିବ ବୋଲି
ଡାକୁଆ କୋଇଲି ମଙ୍ଗଳ ଗାଏ ବଉଳ ଦୋଳରେ ଝୁଲି ।।୦।।

ଯିବ ଦୂରେ ଦୂରେ ତିମିର ଗ୍ରନ୍ତ
ଆଲୋକ ହେବ ଗୋ ଜୀବନ ସାଥୀ
ଏଇ ସେ ଆଗମ ମଳୟ ପରଶେ ବୁକୁ ଉଠେ ଫୁଲି ଫୁଲି
ଯେତେ ଦୁଃଖ ସବୁ ଭୁଲି
, ଅତିଥି ଆସିବ ବୋଲି ।୧।

ବାଞ୍ଛିତ ଚିର ସୋହାଗ ମିଳନ ମଧୁ ଲଗନରେ ପାଇ,
କୁଟୀର ଦୁଆର ଧନ୍ୟ ହେବ ଗୋ, ଜାଗି ନଶି ଅଛୁ ଗୀହାଁ,
ଅନ୍ଧାର ପଥେ ଜଳ ଉଠିବ ଗୋ, ଦୀପ
ଗୀଳାବ ଗୀହାଁ ମୁଁ କଞ୍ଜ ଚରଣ ଗୀପ
କରୁଣା ଝରଣା ଝରିବ ତମର ବାଧା ବନ୍ଧନ ଠେଲି
କଳଶୀ ହେବ ଜୀବନ ତଟିନି ସେଇ ସୁଅ ମୁହେଁ ମେଲି ।୨।

— — —

(୧୯୬)

— ଦାଦରା —

ଭରା ଗୃନ୍ଦ ରାତରେ—
ହରା ପ୍ରୀତି ସାଥୀରେ,
ଝୁରି ମରେ ଏକାକମା ମାଳତୀ ।୦।।

ବାସ ଦ୍ରୈର ସମୀରଣ— ଫେରେ ବାର ବାର ଗୋ,
ହସନ୍ତିକ ମଣ୍ଡଳେ ଅକାଳେ,
ଆଶ କରି କରି ଶେଯ ବଗ୍ରଇ ଆଲୁରେ ଗୋ,
ପଥ ଗୃହିଁ ନଶି ଯାଏ ବିତି
ଲିଭି ଲିଭି ଆସେ ଚନ୍ଦ୍ରାବତୀ ।୧।

ଅଫୁଟା ମରମ କଥା, ଅକୁହା ରହିଲା ଗୋ,
ଦୂରୁ ଦୂରୁ ଥରେ ପୋଡ଼ା ଗୁନ୍ତି,
ଫୁକଆ ଆକାଶେ ଉଇଁ ଦରହସା ଦେଲା ଗୋ
ଝଶଗଲା ତନୁ ମଥା ପୋତି
ଧରା-ରାଣୀ ନେଲା କାନ ପାତି ।୨।

---

(୧୯୭)

—ଦାଦରା—

ତୁମେ କହିଥିଲ ପରା,
ଆସିବ ଫେରି ମୋ କୁଞ୍ଜ ଦୁଆରେ,
ସଞ୍ଜ ଯେବେ ଦେବ ଧରା ।।୦।।

ମାଳଞ୍ଚ ମଝିରେ ଝିପି ଝିପି ହସି
ଖରଡ଼ ଆସନ ପାଶ,
ବାଟ ଚାହିଁ ନିତ କେତେ ଆଶା କରି
ଚାହିଁଛି ଯାଇଛ ଫେରି,
ଗାନ୍ତର ଚଟଖୋଇ ଖୋଜେ କାହିଁ – କାହିଁ
ବୁଲି ବୁଲି ମେଘ ସାରି ।୧।

ବଉଦ ଭ୍ରମର ବୁକୁତଳେ ମୋର
ତୁମକୁ ଦେଇଛି ଥାପି
ମାଗୁ ନାହିଁ କଛି ସବୁ ମୁଁ ପାଇଛି
ମନ କଥା ମନେ ଚାପି
ସାଇତି ରଖିଛି ପାଦ ଧୋଇବାକୁ
ଆଖିରେ ଯମୁନା ଧାରି ।୨।

---

(୧୯୮)

—ଦାଦରା—

ବେଦନା ମଝିରେ ତୁମେ ହଅବୋଲି ଦେଖା
ବାଞ୍ଛିତ ମୋର ହରଷ ବଦନ ସଖା ॥୦॥

କୁସୁମର ଭବ ସଉରଭ ଗଉରବ
ପଲକର ସେ ଯେ ମଞ୍ଜୁଆଳ ବଇଭବ
ଭୁଲିବାକୁ ଚାହେଁ ତେଣୁ ଆଗୋ ପ୍ରିୟ !
ଓଠ ତଳେ ହସରେଖା ।୧।

ତୁମରି ପାଇଁ ଗୋ ! ଜଳାଇ ଏ ଦେହ ମନ
ଜାଳି ରଖିଥିବି ମସାଲ ମୁଁ ଅନୁଦିନ
ଘରି ହେବ, କାଳେ ତେଣୁ ସିନା ପ୍ରିୟ !
ଗୃହେଁ ନା ଚନ୍ଦ୍ର ଲେଖା ।୨।

---

(୨୯୯)

—ଏକତାଳୀ—

ମାଳତୀ କୁଞ୍ଜ ତଳେ
ସେଦିନ ବିଦାୟ ବେଳେ
କହିଥିଲ ପରି ଆସିବ ଗୋ ଫେରି
ନିଶୂନ ନିଶୀଥ ହେଲେ ? ॥୦॥
ଡାକିବ ଦୁଆରେ ଜାଗ ପ୍ରିୟା ବୋଲି
ମିନତି ମୋରି କି ଆଜି ଗଲ ଭୁଲି
ମନେପଡ଼େ ସେଇ ବିଦାୟ ଲଗନେ
କାନ୍ଦିଥିଲ ତୁମେ ଥରେ
ପାଶୋରି ନ ଯିବ ତୁମକୁ ବୋଲି ମୁଁ
ରାଣ ଦେଇ ଗେଲେ ଗେଲେ ।୧।
ଆଜି ହେଲି ମୋର ଆଖି ଝୁରି ବାଲି
ବୁକୁରେ ପାଷାଣ ଥାପି—
କେତେ ଆଉ କହ ସହିବି ପ୍ରିୟ ଗୋ !
ଗୁରୁଜନ ମନେ ଛପି—
କେତେ ବୁଝାଇ ମୁଁ ନିବାରିବି ଲୁହ
ତମର ଆସିବା ଛଳେ ? ।୨।

---

(୨୦୦)

—କହରବା—

ଭୁଲି ନାହିଁ ପରବାସୀ,

ଦେଇନାହିଁ ଯାହା, ମିଳନ ଲଗନେ ହରଷେ ଦେଲି ତା ଆସି ॥୦॥

ଦହନ ମଝିରେ ଥାଅ ବୋଲି ତୁମେ ଜାଣି

ମନ ଖୋଜେ ଚିର ବେଦନା ତାହାରି ଲାଗି

ତୁମ ଦୁଆରେ ମୁଁ ଭିକାରୁଣୀ ନୁହେଁ

ସପନରେ ଯାଏଁ ଭାସି ।୧।

ସୁଖ ଲଗେ ନାହିଁ ସୁନ୍ଦର ସେ ଭରା ହସ

ପୂନଅଁଠା ମୋର ଭଗାରି, ଭାଙ୍ଗେ ମୋ ଆଶ

ତୁମ ଚଲା ପଦ ଶବଦ ବାରେ ମୁଁ

ହେଲେ ଘନ କଲା ନିଶି ।୨।

———

(୨୦୧)

—ଦାଦରା—

ଆଖି ଝୁରୁ ଯେତେ ମୋର

ପ୍ରିୟ ଗୋ, ହେଉ ସେ କଣ୍ଠେ ତୁମରି ନବ ମଲ୍ଲିକା ହାର ॥୦॥

ଏଇ ସିନା ଆଶା ମୋର ।

ଗୁଲି ନଦ ତଳେ ତୁହେ ଯେ ସପନ ଚେଇଁ

ନୟନେ ତୁମରି ନିତ କାନ୍ଦ ପାଉ ଯାଇ,

ଏ ମୋର ମନର ଆଶା ମଣିଚକା

ହେଉ ତୁମ ବାଲି ଝର

ଏଇ ସିନା ଆଶା ମୋର ।୧।

ଜୀବନରେ ମୋର ହଜିଗଲା ଯେତେ ଯାହା,
ଭଣ୍ଡାରେ ତବ ସାଇତା ରହୁ ଗୋ, ତାହା
ଲକ୍ଷ-ହସ ମୋର ହେଉ ତୁମ ଶେଯେ—
ଚନ୍ଦ୍ର ଲେଖାର ଗାର,—
ଏଇ ସିନା ଆଶା ମୋର ।୭।

———

(୨୦୨)

—ଦାଦରା—

ପଦେ କଥା ଖାଲି—କଥା ପଦେ ମୋର
ଶୁଣି ଯାଅ ଚାଲି—ଆରେ ମଧୁକର ।।୦।

ଯଉବନ ମୋର ଫେରିବ ଦୁଆରୁ
ସଉରଭ ମୋର ଛପିବ କୁଆରୁ
ଆଜନମ ସାଥୀ ତୁ ଯେ କରିବୁ କି ପର ? ।୧।

ଯାହା ଥିଲା ଧନେ, ବୋଲିବାକୁ ମୋର
ଲୁଟି ନେଲୁ ତୁ ତ ଆରେ ମନଚୋର !
ଅଚିହ୍ନା ପରିଏ ଆଜ ଫେରୁ ବାର ବାର ।୨।

ଏଇ କି ପୀରତି—ଏଇ କି ରେ ରୀତି,
ଏଇ କି ମିଳନ ମଧୁ-ପରିଣତି
ଛଳ ଆଖି ତଳେ ସତେ ନୀର ଖେଳିବାର ? ।୩।

———

(୨୦୩)

—କହରବା—

ଛପି, ଛପି ନାହିଁ ଖର,
ସର ନାହିଁ ଫଗୁ ଖେଳା,
ଫେର, ଫେର ନାହିଁ ଘରେ, ବନର ବହଗ ମେଳା ।।୦।।
ସଜାଡ଼ ତ ସାର ନାହିଁ
କଳା-ନାଗ-ବେଣୀ କାହିଁ
ଛଳା ଆଖି ତଳେ ଦର ଢେଳା ମୋର,
କଜ୍ଜଳ ଘନ-କଳା
ପୁଛିବାକୁ ପର ତାର ଫୁଲ ମେଘେ ଏବେ ବାକି ଅଛି ବେଳା ! ।୧।
ବୃନ୍ତ ଡେଣା ଠେଳ, ମତ୍ତ ନବୀନା କଳ
ଦରହସା ମାଶ, ସାରନାହିଁ ଦେହେ ଗନ୍ଧ ଅତର ବୋଳା,
କୁଞ୍ଜ ତ ଫୁଲ-ସଞ୍ଜ ପାଇଁ କି ସାଜ ନାହିଁ ଫୁଲ-ଦୋଳା ।୨।
ଯେବେ ସେ ନଶୀଥ ଶଶୀ
ମନ୍ଦନେ ଥିବ ଟେଗା ବସି,
ତୁମର ଆଶାରେ ପ୍ରିୟ, ଦୁଆର ରଖିବ ଖୋଲା
ବାତାୟନ ପାଶେ, ପଥ ଚୁମ୍ବି ଥିବ, ଗୁନ୍ଥି ବଉଳ ମାଳା ।୩।

———

(୨୦୪)

—କହରବା—

ତାର ହର ଏ, ଧାର ହର ଏ, ବରଷା ସ୍ରୋତରେ,
ଚକିତ ନୟନ ମୋର, ଶଙ୍କିତ ବାରବାର, କମ୍ପିତ ଗୃହରେ ।।୦।।

ଘନ ଗୁରୁ ଗୁରୁ ଗୁରୁ ଡାକେ
ଝୁରୁ ମନ ଦୁରୁ ଦୁରୁ ଚମକେ
ଦାମିନୀ ଚମକିତ, ଅମ୍ବର ଘନଭୂତ, ଆଶା ଜାଳେ ପ୍ରୀତି ବର୍ତ୍ତିରେ ।୨।

ଅସରା ପଥେ ମୁଁ ଆଗୁସାର
ଆପଣାରେ କର ସାଥପର
ଅନ୍ତର ଖୋଜେ,ଆଲୋକ ଅନ୍ଧାରେ, ଜୀବନ ମରଣ ତୀର ସାଥିରେ ।୩।

— — —

(୨୦୫)

—ଏକତାଳୀ—

ଏଇ ସେ ଚରଣ ଚିହ୍ନ ତାହାର, ମରୁ-ଥଳ -ଶତଦଳ
ଏଇ ସେ ପବନ ବୋହିଯାଇଛି ସେଇ ଅଙ୍ଗର ପରିମଳ ॥୦॥

ଜୀବନେ ଯାହା ମୁଁ ପାରିନାହିଁ ଦେଇ,
ଜମନେ ଯାହା ମୁଁ ପାରିନାହିଁ ନେଇ,
ସେଇ ଦିଆ ନିଆ ସାରିଦେବ ବୋଲି
ଅଶବଦ ସୁରେ ଡାକଇ ମୁରଲି
ରାଧା-ମନ ମୋର, ପିଠି କରିଦିଏ ଦୁନିଆଁ ବାରଣ ବନ୍ଧ,
କାହ୍ନାରେ ଯାହା ମୁଁ ପାଇନାହିଁ, ଆଜ,
ସ୍ବପ୍ନାରେ ଏ କି ସେ ଛଳ ? ।୧।

କଟକୋଣାଇ ଗୀତରେ ଘୁମ ଦୂରେ ଫେରେ
ଡଳେ ଗୋ କୁଞ୍ଜ ତଳ,

ସେଇ କର ଛୁଆଁ, ହଏ ମୋ ତନୁରେ
ବାଉଳା ଫୁଲର ଦଳ,
ଆସ ବୋଲି, ହାତ ପସାରିଲେ ପାଏଁ ଦୁଇ ଟୋପା ଆଖିଜଳ,
ଏଇକ ଗୋ, ସତେ ମିଳନ ବାସର, ଅଭୁଲା ସରଗ-ଫଳ ? ୨।

———

(୨୦୬)

—ଦାଦରା—

ମନ ଖୋଲି ଥରେ କହ ଲୋ ମାଳତୀ !
କାହା ଲାଗି ସତେ କଏ,
ତୋରେ ହେରି ମଧୁକର ଭୁଲେ କି,
ସେ ତୋ ମନ ଭୁଲାଇ ହଏ ॥୦॥
ଏଇ ଯେ ଶ୍ୟାମଳ ଲତା କୋଳେ ଝୁଲି
ସବୁବେଳେ ସତେ ଲୋ, ଖେଳୁ ଥାଉ ଦୋଳି
ସୁନ୍ଦର ପଣରେ ହାସ ମନାଇଁ ଗୋ
କଏ କାହା ତନୁ ଛୁଏଁ ? ।୧।
ରସି ବାସ ତୋରେ ହଏ୍‌କି ଚରଣ
ଅବା ତୁ ମହକ ଲେଉ ଆଣୁ ପାଣ ?
କଏ କାହାଲାଗି ସାଜେ ଲୋ ସଜନୀ !
ବଗ୍ରର ମୋ ହାରିଯାଏ ।୨।

———

(୨୦୭)

—କାହାରବା—

ଫୁଲ ରସିଆ ରେ, ଫେରି ଫେରି ଯା' ଯା
ଛା ମନ ତୋ ମନେ, ନାହିଁ ମଧୁପିଆ !
ଗୁନ୍ଦ ଗନ୍ଧ ଭୁଲି ଯା ଯା ॥୦॥

ଗା'ନା କାନେ ତୁ ଗୁଣୁ ଗୀତ ଗା'ନା
କୁଞ୍ଜ ଦୁଆର ପଥ ଭୁଲି ଯା'ନା
ଝୁରି ମରେ ସେ, – ଭୁଲି ସରେ ସେ
ମାନ ମନା, ଫେରି ଯା ନା ।
ସେ ଯେ ଘୁମାଏଁ ଝରା ଫୁଲ ଶେଜେ
ସୁବାସ ହରାଇ'ଧରା ଛୁଇଁ ଲାଜେ
ଭରା ମଧୁ ମାସେ—ମରେ ସେ ନିରାଶେ
ମାନ ହରା ଫେରି ଧା' ଯା ।୧।

— — —

(୨୦୮)

—କହରବା—

ବନ କଳିକା ଗୋ, ନବ ମାଳିକା ଗୋ,
ମଧୁପରେ ଯେବେ ଡର,
ବୃନ୍ତ କୋଳେ ଭୋର, ମଉଳି ଯିବାର,
ଭଲ ଗୋ ! ମର ତୁ ମର ।।୦।।

ଗନ୍ଧରେ କୁମୁଦ ଯନ୍ଧ
ଡରେ ଢଏ ଆଖି ମୁନ୍ଧ,
ଗନ୍ଧର କି ଯାଏ ଆସେ
କାହାରେ ପସରା ଛାର
ଅଫୁଟା ରହିଲେ ରହିଯିବ ସିନା
କୁମୁଦିନୀ ହସିବାର ।୧।

ଯଦ ଗୋ ! ବସନ୍ତ ଫେରଲା ଦୁଆରେ ଡାକ
ଯଦବା କୋଇଲି କୁହୁଗାଇ ଗଲା ଥକ,
ଯଦ ଗୋ ରସାଳ,—ବେଶ ନ ରଚଲି
ବଉଳ ଝାନ୍ତୁଆ ଖୋସି,
ଶ୍ରାନ୍ତ ଚରଣ—ପାନ୍ଥ କେବେ କି
ମୂଳେ ତାର ଯିବ ବସି ?
ଫୁଲ-ଛଡ଼ା ସେଇ, ଫଳ ହବ ତରୁ
ଧିକ ଧିକ ଜୀଇବାର ।୨।

———

(୨୦୯)

—କହରବା—

ଦୂର ନୀଳ ନଭ ଶଶୀ ରେ
ରହ ଦୂର ନଭେ ବସି ରେ
ନହି ତନ୍ଦ୍ରା ଭୁଲେ ମିଶି ରେ,
ଦଉ ସ୍ୱପ୍ନ ଘରେ ହସି ରେ ।୧।

ପାଶେ ଗୋ ନତ ଭୁ ଆସନା
ଶୟନେ ନତ ଭୁ ବସନା
ଥାଅ ଗୋ ନତ ଭୁ ନୟାନା
[ଝୁରେ] ମୁଁ ନତ ଗୋ ତୋ ଧନା
ହୃଅନା ଜୀବନେ ବାସିରେ ।୨।

ପରଶେ ନାହିଁ ମୋ ଆଶ ରେ
ଅଜଣା ଆଜ ତୋ ବାସ ରେ

ଓଢ଼ଣୀ ଉହାଡ଼େ ଆସ ରେ
ସରଗ-ସଗରୀ ବେଶରେ
ନ ପାନ୍ତୁ ନ ପାନ୍ତୁ, ନଶିରେ ।୩।
କାଲେ ହଜ ଯିବୁ, ଡରେ ମୁଁ
ହାତେ ଧରୁ ଧରୁ ଥରେ ମୁଁ
ତୁମେ ଦୂରେ ଦୂରେ ଥାଅ ଗୋ
ସେଇ ଶୁଣା ସୁରେ ଗାଅ ଗୋ
ଥାଏଁ ଦୂର ପରଦେଶୀ ରେ ।୩।

(୨୧୦)

— ଦାଦରା —

ଦୂର ଗଗନର ତାରା
ଚିର ମୋର ଅପାଶୋରା
ସପନର ତୁ ଯେ କଳ୍ପନା ପରା
(ସତେ) ଗୋପନ ଅଶ୍ରୁ ଧାରା ।।୦।।
ବନ ହରିଣୀର ଚକିତ ଚପଳ ଭଙ୍ଗି
ମନ ସ୍ୱୈରିଣୀର କୁଟୀଳ ଭ୍ରୁ-ଭଙ୍ଗୀ
ଆସନା ଗୋ ଧୂପ ଗ୍ଧାଇ
ବସନା ବାସ ଢଗ୍ଧାଇ
ନଶି ମୋ ତନ୍ଦ୍ରାହରା ।୧।
ବୃନ୍ତ ତଳପ ଶାୟିତା, ଅବଗୁଣ୍ଠିତା
ମନ୍ତ୍ର ମଞ୍ଜୀ-ବଚନ-ରଚନା-କୁଣ୍ଠିତା
ଅନୁସର ସରେ ଅଳ
ଅନୁରନ କରେ ଅଳ,—
କଣ୍ଠିତ ମଧୁ ଧାରା ।୨।

ସ୍ମୃତକର ଘନ ଆଶାର ଅସାର ବନ୍ଧୁ
ଲୋଚକର ତୁ ଯେ ଉର୍ମି ଚଞ୍ଚଳ ସିନ୍ଧୁ,
ତୁ ଯେ ଦୂରେ, ମୁଁ ଯେ ଦୂରେ –
ଖୋଜେ ମିଛେ ବାଲୁଚରେ
ଲୋକଲଜ୍ଜେ ହୁଏ ସାରା ।୩।

---

(୨୧୧)

— ଦାଦରା —

ଦୂରେ, ଦୂରେ, ଦୂରେ, ରହ ବଣମଲ୍ଲୀ ଦୂରେ,
ମାୟା ଛଳରେ ଭୁଲାଅ ତୁ ରେ ।।୦।।
ଅଭିସାରିକା ହେଲୁ ଦିବସେ
ମିଛ ଛଳନା ଭରି ମାନସେ
ସଙ୍କେତେ ଚୋର – ଫୁଲର ନାଗର
ମନ ଚୋରି ମିଳେ ପୁରେ ।୧।
ତୁ ରେ ଚେତି ମଧୁ ଘୂମ
ରସେ, ରସାଇ ତାରି ମରମ
ନରମ ପବନ ପରଶେ ଚମକ
ସେ ଯେ ଶେଜୁ ଅପସରେ ।୨।
ଜଣା ଗଲାଣି କପଟ ପ୍ରୀତ
ସ୍ପୃଷ୍ଟୁ ଭଣି ଯା' ଭୁଲାଇ ମତ
ବସନ୍ତ ଦୁଆରୁ ଡାକ ଫେରୁ ପଛେ
ଦୂରୁ ମୁଁ ଜୁହାରେ ତୋରେ ।୩।

---

(୨୧୨)

—କହ୍ବରବା—

ଆସେ ଦିନ, ଯାଏ ରାତି,
ଜଳେ ଚିତା, ଜାଳେ ଗ୍ଲାନି,
ଆଖି ମାରେ, ଝରଣାରେ
ନାଥା ଖେଳେ ମନ-ସାଥୀ ॥୦॥

ଘର ଫେରୁ ଏକାକୀ
ଯାଏ ବାହୁଙ୍ଗ ଡାକି
ନଜାଣେ, ନାହିଁ ତା ସାଥୀ ରେ
ନେବ ଯେ ବୁକୁ ପାତି ।୧।

ମନ ଭୁଲେ ସେ ଆଖି,
କୁହୁକ କଲା ମାଖି
ଚିତା ଠେଲି ଅନାଏଁ ସେ
ଅମା ଅନ୍ଧାରେ ଚେତି ।୨।

କାନ୍ଦି ଯେଉଁ ଲୁହାରେ
ସେଘରୁ କେ'କରେ ଫେରେ
ଯାଏ ଦୁନିଆଁ ଲାଗି ସେ
ଲୁହାର ଜାଲ ପାତି ।୩।

———

(୨୧୩)

—ଦାଦରା—

ମଉଳ ଗଲଣି ମାଳତୀ,

ସେଦିନ, ସଞ୍ଜେ ଥିଲା ଯେ ସଜ

ମଳିନ ହେଲଣି ନବଦଳ ତାର

ନାହିଁ ସଉରଭ ସାଜ, ||୦||

କାଳିର କଳା ଭ୍ରମରେ

ବୃନ୍ଦେନା ହେଲେ ଭ୍ରମରେ

ବାଟ ଭାଙ୍ଗି ଯାଏ ଦୂରେ ଦୂରେ ଫେରି,

ସଚେତ ଜୀବନେ ନ ଚହ୍ଲିଲା ପରି

ଏଇଥିଲା ପରା ଅନୁସରି କାଲି

ପାଶୋରି ମହତ ଲାଜ |୧|

କାଲି ବୃନ୍ଦ ରାତି ସଜ ମଉଛବ

ଆଜ ଉବକର ଗରବ ପରବ

ଅଭିମାନୀ ମାନଭୁଲ ଚୋର,

ହଜିଯିବ ତୃଷା ତେଜ |୨|

---

(୨୧୪)

—କହରବା—

ଗୃହ ହସେ, ହସେ ରାତି

ନ ହସିଲ ତୁମେ ସାଥୀ,

ଝୁରି-ଆଖି-ଝର ମାରେ

ଯମୁନା ଗଢ଼େ ମୋ ଗୃହ ||୦||

ଆସି ବସନ୍ତ ଫେରିଲା,
ତାଙ୍କ ଦୁଆରେ ହାରିଲା,
ଗନ୍ଧେ ମୋ ଜଳାଗିଯା
ସାକ୍ଷୀ ରହିଛି ତ ଚେତ ।୧।

ଭୁଲି କୋଇଲି ଗାଇଲା
ମୟ ବଉଳ ଚେଇଁଲା,
ତୃଷା ଆଖି ନ ଫେରିଲା,
ବୁକୁ ଉଠେ ମୋର ତାତି ।୨।

---

(୨୧୫)

—ଖେମଟା—

ଧାର ବରଷା ଝରେ, ମୋ ମନ କାହିଁକି ମରେ
ଝୁରୁ ଚପଳା ହସେ, ଘୁଣ୍ଡଟା କାହିଁକି ଥରେ
ପ୍ରିୟ ମିଳନ ଲଭି, ଫୁଲ କଦମ୍ବ ଫୁଲେ
ଶୀତ କଣ୍ଟା ପୁଲକ, ସୋହାଗେ କାହିଁକି ଭରେ ।୦।

ହାର ମାଳତୀ ମତ୍ତ, ସମୀର ବୁଲେ ବନ୍ଧରେ
ବାସ ଲୁଟାଇ ଶଠ କାହିଁକି ହାତରେ ପରେ ।୧।

ଏକା ଝୁରୁଛି ଶେଜ ପ୍ରିୟ ମୋ ପରବାସରେ,
କାଳ ବରଷା କରେ କାହିଁକି ପରିହାସରେ ।୨।

ଘଡ଼ି ଘଡ଼ି ଗରଜି ବାଜ କି ପଡ଼େ ମୋ ଶିରେ
କହଣଶୀ ଜାଣିଛି ବିଯୋଗୀ ଭଗାର ସେରେ ।୩।

---

(୨୧୬)

—ଦାଦରା—

କୁଞ୍ଜର ସଜ ଫୁଲ,
ସଞ୍ଜରେ ଥିଲା ମୂଳ ॥୦॥
ମଞ୍ଜରୀ କାନ୍ତି ଅଳି
ଗୁଞ୍ଜରୀ ନିତି ଅଳି
ଥିଲା ଦାସ ସମତୁଲ ।୧।
ଅବଗୁଣ୍ଠନ ଠେଳି
ଧୂଳି ଲୁଣ୍ଠିତା ଆଜି
ସଜ ସାଜ ଛାଡ଼ି ବାସି
ଫେରିଯାଏ ପରଦେଶୀ
ମଧୁ ପିଅ ଦଳ ଦଳ ।୨।
ଯଉବନ ପଲକର
ସପନଟା ସାଥୀ ଛାଡ଼
ଆଜି ସଜ କାଳି ବାସି
ଆସେ ଯାଏ ନଭ ଶଶୀ
ରହେ କିଏ ଚିରକାଳ ? ।୩।

———

(୨୧୭)

—ଦ୍ରୁତ-ତ୍ରିତାଳ—

ଶରତ ଆସିଲା, ଧରା ତ ହସିଲା
ଗଙ୍ଗଶିଉଳୀ ଅନୁରାଗେ ରସିଲା ॥୦॥

ଧବଳ ମଙ୍ଗଳ ମାଳ,
ନୀଳ କଣ୍ଠେ ସତେ ମାଳ
ଗଗନ ଉରସେ ଖେଳ
ଝଳ ଝଳସିଲା, ଶଶୀ ପରଶିଲା
ରସେ ଢଳସିଲା ।୧।

ସଚଳ ବାଦଲ ଦଳ,
ଶଶୀରେ କରି ଆଦର
ଘଡ଼ ଘଡ଼ କରେ କୋର,
ସମୀର ରୁଷିଲା, ତାରେ ନ ରସିଲା
ସୁରତ ନାଶିଲା ।୨।

---

(୨୧୮)

— ଏକତାଳୀ —

ନିଦ ନାହିଁ ଆସେ,
ଜାଗି ରଜନୀ, ଯାଏ ସଜନୀ, କତ ଯେ କପାଶେ ॥୦॥
ତାରା-ହାରା ରାତି – ଭାରି ଭରା ଗ୍ଲାତି
ଝରା ଫୁଲେ ଧରା ଧୂଳି ବାସେ,
ବନ ବୁଲା ପକ୍ଷୀ, ମନ ଭୁଲା ସାକ୍ଷୀ,
ମୋରେ ପରିହାସେ ।୧।
ମରମର ଚିନ୍ତା, ମରଣର ଚିତା,
ଜାଳି ଦିଏ ଖାଲି ସେ କା' ଆଶେ,
ମଉଳାଏ ମନ, ବାଉଳା ପବନ,
ଡାକେ ସତେ ପାଶେ ।୨।

---

(୨୧୯)

—କହରବା—

ଫୁଲ ନ ଫୁଟିଲେ, ବାସ ନ ଛୁଟିଲେ,

ଆସେ କି ଭ୍ରମର ପାଶେ ?

ଫୁଲ ମଉଳିଲେ, ଧୂଳି ସାଥୀ ହେଲେ,

ଆସେ କି ଭ୍ରମର ପାଶେ ?

ସେଦିନ, ଯେଦିନ ମହୁଥିଲା ମଖା ।

ସେଦିନ, ଯେଦିନ ହସ ଥିଲା ଲେଖା,

ଆଜ ସେ କୁହୁକ ଯେଉଁ—

ଚେତା-ଚିତ୍ତ ପାଶୋରିଲା

ମୁହଁ ନିଜ ମୁହେଁ ମାରି ଫେରି ଥରେ,

ଆସେ କି ଭ୍ରମର ପାଶେ ? ।୨।

ସେ ଦିନ, ଯେଦିନ ଶପନେ ସପନେ

ସେଦିନ, ଯେଦିନ ନୟନେ ନୟନେ

ଅନୁସରି ଗୁଞ୍ଜି ତୋର—ଥିଲା ସେ ନିଶା ବିଭୋରି,

ଅଳସ ବୋଳା ସେ ଗୁହାଣୀ ଛପିଲେ

ଆସେ କି ଭ୍ରମର ପାଶେ ? ।୨।

ସେଦିନ, ଯେଦିନ ଝୁରୁଥିଲା ସେ'ଯେ

ପଥ ଚୋର ଚାହିଁ ଚାହିଁ

ଖୋଜୁଥିଲା କାହିଁ କାହିଁ,

ଭରା ଯଉବନ, ଘୁମାଇ ଶୋଇଲେ,

ଆସେ କି ଭ୍ରମର ପାଶେ ? ।୩।

———

(୨୨୦)

—ଖେମଟା—

ଆଖିର ଲେଖା ରେଖା ଯାହା,

ଆଖିଟି ଏକା ଜାଣେ ତାହା ।

ଆଖିର ସାକ୍ଷୀ ଆଖି ବିନା,

ଅକୁହା କଥା କୁହା ॥୦॥

ଆଖିର ଆଖି ମିଳନ

ନ ଜାଣେ କେହ୍ନ ତା ଆନ

ଦିନ କି ରାତି—ହେଉଛ ସାଥୀ

ଭୃଙ୍ଗ ତା ମନ କଥା ଜାଣେନା

[ମନ କଥା ଜାଣେନା] ଭ୍ରମର ସେ ଦଗାଦିଆ ।୧।

ଅମା ଆଲୋକ ନାହିଁ

ଆଖି ଚନ୍ଦ୍ରେ ସାଥୀ ଥାଇ

ଆଖିଟି ହସେ—ଆଖିଟି କାନ୍ଦେ

ଦୂର ଦରଶେ, ଟାଣେ ସେ ପାଶେ,

(ଟାଣେ ସେ ପାଶେ)—ବଡ଼ ପରମାଦିଆ ।୨।

— — —

(୨୨୧)

—କହରବା—

ସବୁର ନୟନ ମନ ସମାନ ତ ନାହିଁରେ

କଏ ଜାଣେ କାହା ଆଖି ଲାଖି ରହେ କାହିଁ ରେ ॥୦॥

ରବି ଲାଗି ଶତଦଳ

ହୁଏ ମେଲା ଶତ—ଦଳ

ଶଶୀ ମୁଖେ କୁମୁଦିନୀ ଥାଏ ତ ଅନାଇଁ ରେ
ଖସରେ କେ ଚୋରା, କଏ ଝୁରେ ଶୀତ ଗ୍ଲାଇ ରେ
ଦୁନିଆଁରେ କଏ ପୂର୍ଣ୍ଣ କାହା ଯେନ୍ନ ବାଇ ରେ ।୧।
କଏ ଶୁଣି ଅଳି ଅଳି
ବାସ ରେଣୁ ହୁଏ ବୋଳି
କେତକୀ ମଧୁପ ଗୁଣ୍ଡୁ ବସ ମଣ୍ଡୁଆଇ ରେ ।
ବେଣୁ ବନ ଶିଶ୍ ଦ୍ୱାରେ ମଳୟରେ ଛୁଇଁରେ,
ଫଗୁଣ ଫଗୁଆ ବାଆ ଶୀତରେ କ ପାଇ ରେ ।୨।
ଫୁଟା ଯେତେ ସଜ ଫୁଲ
ଉସନ୍ଦ ସିନା ତା ମୂଲ
ବକଶେ କ ସବୁ ଜାତି ଫୁଲ ତୁମ ପାଇଁ ରେ
ତୁମ ଲାଗି ଲୁହେ ଯାହା, ଯେତେ ଆନ କେହି ରେ
ମନ ଯାର ରସେ ପଞ୍ଚି, ତାର ଏକା ସେହି ରେ ।୩।

—

(୨୨୨)

—ରୂପକ—

ବନ ଭ୍ରମର ତୁ ମିଛେ ମରନା ରେ ଝୁରି,
ଫୁଟେ ଯେ ସୁମନ ସେ କରେ ଏକା ଚୋହରି ? ॥୦॥
ବୁଦ୍ଧିମା ସାତରେ, ଜହ୍ନଆଁ ରୁତିରେ
ଶଶୀ କୋଳେ ଧରେ ଗୋଷ୍ଠ
ତର ତର ହୋଇ, ମଳୟରେ ଚୁମ୍ବି
ଦୂରେ ଯାଏ ଅପସରି ॥୧॥

ତୋ ମନ ମଜାଇ, ଭୁଲଏ ରଞ୍ଜାଇ
ଆପଣାର ଜନ ସବୁ
ମନ ଦରପଣେ, ହସୁଥାଇ ଜଣେ,
ଲୁଚକାଳି ଖେଳ ଖେଳି ।୨।

ଭାବେ ମନେ ମନେ, ଆନ କେ ନ ଜାଣେ
ଗୁପତ ଛଳ ବୁଝୁଣି,
ମୂକପରି ଥାଇ, ମୁଖ ନ ଫିଟାଇ,
ଆଖି ଥିଲେ ଅନ୍ଧ ପରି ।୩।

ତୋ ଲାଗି ଯେତକ, ଲଭିଲୁ ସେତକ
ଏତକ ଥାଅ ବରୁଚି,
ହେଲେ ସେ ଆନର, ତୋର କ ଖାତର
ପାଣି ଯୁଅ ତ ସବୁରି ।୪।

---

(୨୨୩)

—ଦ୍ରୁତ-ତିତାଳ—

ଗ୍ରନ୍ଥରେ କରଣ ସିନା, ଦେଖିଛୁ ଏ ଖୋଲା ଆଖି
ଅନ୍ତରେ ପଶ ଗୋ, ତାର ଗଣ ଝୁରି ମନେ ଲାଖି ।।୦।।

ସୁମନ ସୁଗନ୍ଧ ଭରା
ସଜାଡ଼େ କେଶର ଝରା
ଜ୍ଞାଠର ପ୍ରୀତି ପସରା
କୋଠରେ ସେ ଥାଏ ଠାକି ।।୧।।

କମଳ ନୟନ ତଳେ
ମାର ଲୁଚକାଳି ଖେଳେ
କେ' ଦେଲା ମିଳନ ମେଳେ
ବିରହ-ଦହନ ପୋଛି ॥୨॥

ଯହିଁରେ ଯେତେ ସୁଆଦ
ତହିଁ ତେତେ ପରମାଦ
କେତଙ୍କରେ କଣ୍ଠା ବାଦ
ଆଖି, କାନ, ମନ, ସାକ୍ଷୀ ॥୩॥

---

(୨୨୪)

— ଦାଦରା —

କାହ ବନ୍ଧୁ କହ,
ମନ ଭୁଲା କଥା କି ଗୋ ସ୍ନେହ ॥୦॥

ଯଦି, ଝଳ ଗୋ ନୟନ ଜଳ,
ଝଳ ମାୟା-ହରିଣୀର ଛଳ
ତେବେ, ତାତ୍ତ ଧରା ଗ୍ରୀଷ୍ମ ତଳ
କେଉଁ ମେଘ ସେ କରେ ଶୀତଳ
ସେ କି ଗୋ ସୋହାଗ ନୁହଁ ? ।୧।

ଯଦି ପାଷାଣ ବୁକୁ ଫଟାଇ,
ମରୁ ଥଳେ ଝର ଯାଏ ବହି,
କୋଟି କଣ୍ଟକେ ଭୁଟି ଦେଇ
ଫୁଲ ଶିରେ ଫୁଲ ହସୁଥାଇ
ସେ କି ଗୋ ଛଳନା ମୋହ ।୨।

ଯେବେ ଦୂର ଆଖି ଦୂରୁ ଦେଖେ,
ମନ ଚଳେ ମନ ଲେଖା ଲେଖେ
କହେ କଳପକ ଅଳପକେ,
ତନୁ ନଥାଇ ତନୁରେ ଲୁଖେ

ନୁହେ କ ସସ୍ରଗ ବାନ୍ଧ ।୩।

—୦—

(୨୨୫)

—ଦ୍ରୁତ-ବିଭାଲ—

ଚନ୍ଦ୍ର ଦେଖ ଭୁଲନା
କାଠ ଭଳ ଅନ୍ତରେ ଗୋ, ଚମ୍ପକ ମହକେ ସିନା ॥୦॥

ନ ଧର ଅଧର ଫୁଟେ
ଯେତେ ଦରହାସ ଫୁଟେ
ସବୁ କି ମରମ ପଟେ

ମଖାଏ ମଧୁ ବାସନା ? ।୧।

ଆଖିର ସୁନ୍ଦର ଯେତେ,
ପରମାଦ ଢଆ ସେତେ
ରୂପରେ ଭୁଲିକ ସତେ

ମତ୍ତପିଆ ଆନମନା ? ।୨।

ରୂପ ଚଳେ, ଧୂପ ଗୁଇ
ଲୁଚି ଲୁଚି ମାରେ ହାଇ
ଝଲକେ ଢଏ ଭୁଲାଇ

ଶଶୀ କାହିଁ, ଶଶ ଦନା ? ।୩।

———

(୨୨୭)

— ଖେମଟା —

ଆଶା ପ୍ରଦୀପ ଶିଖା,
ଜାଳି ଅନ୍ଧାର ଘରେ
ଧରା ନ ଦେଲ ସଖା !
ଲୁଚି ସପନପୁରେ ॥୦॥

ନବ ପାସୋରା ସ୍ମୃତି
ଖେଦ ପସରା ଗ୍ଲାନି
କରି ଜୀବନ ସାଥୀ
ମୋର ନୟନ ଝୁରେ ।୧।

ଯେବେ ମିଳନ ପାଇଁ
ଲବେ ଆଶା ଗୋ ନାହିଁ
ତେବେ ରହିଲ ଗାହିଁ
ସେଇ ଆକାଶ ପାରେ ।୨।

ଘନ ବାଦଲ ଗ୍ଲାନି
ମନ ଘେରାଇ ନାହିଁ
ନିତି ଖୋଜିବ ତହିଁ
ଯହିଁ ମଳୟ ଫେରେ ।୩।

(୨୨୭)

—ଦାଦରା—

ଆକାଶ ମନ୍ଦିରେ ସେଇ ଯେ ତରାଟି
ସେଇ ନା ଗୋ, ତୁମେ ପ୍ରିୟ !
ବଉଳ ରସିଆ ତୁମେ ନା ସେ କୁହୁ
କୋଇଲି କଣ୍ଠେ, କହ ॥୦॥

ତୁମେ ନା ଏ ମନ କାନନ ନଆଳି,
ତୁମେ ନା ସୁମନା ମନ ଭ୍ରମର ଅଳି,
ମଧୁ ଲୋଭେ ବୁଲି, ଶତଦଳ ମୁଖେ, କୋଟି ଚୁମ୍ବନ ଦିଅ ।୧।

ଅକୁହା କଥାର ଶବଦ ନା ତୁମେ
ଅଦେଖା ଲେଖାର ହରଫ ନା ତୁମେ,
ଅଧା ଘୁମ-ମୁଦା ଆଖି ତଳେ ଲୁଚି, ସପନ ଛବି କି ନୁହ ? ।୨।

ଶତ ଲାଞ୍ଛନା ଆସିବାର ଆସୁ,
ନନ୍ତ ମରଣ ଗୋ, ଦୁଆରେ ମୋ ବସୁ,
ହସିବାର ହେଲେ, ଯେତେ ଜନ ହସୁ, ତୁମରି ପାଇଁ ଏ ଲୁହ ।୩।

---

(୨୨୮)

— ଦାଦରା —

ମନ-ଭରା ସେ ନୟନ ଧାରେ, କଜଳ ଗାର କାହିଁକି ?
ମଧୁ-ଝରା ସେ କମଳ ମୁଖେ, ବାସ ପସରା କାହିଁକି ? ॥୦॥

ଗୁଞ୍ଜଣାଦେହେ କାକର ବୋଳ
ମଧୁରେ ମଧୁ ଦେଲା କେ ଗୋଳ
ହସରେ ଝରେ ମୁକୁତା ହାର, ଖଞ୍ଜିଲା କେ କାହିଁକି ?
ଏକେ ତ ଘାଳ ଭ୍ରୂରୁ ଭୁଜଙ୍ଗୀ,
ତହିଁ ଭ୍ରମର ନୟନ ସଙ୍ଗୀ
ଥରେ ନ ମାରି, ଜୀବନେ ନତି, ମରଣ ଦିଏ କାହିଁକି ?

---

(୨୨୯)

—କହରବା—

ଫୁଲ ସଣୀ ! ଯେବେ ଦେବତା କଣ୍ଠ—ଗରସକ ମନ ଚୋର,
ଅନ୍ତର କର ଅନ୍ତରୁ ସଖି ପରବେଶ ତୋର ଉର ॥୦॥
ଥିଲୁ, ମନ ସୁଖେ ବନ-ବାଳିକା
ଭୁ ଯେ, ମନାସିଲୁ ହେବୁ ମାଳିକା
ପାଦେ ସାରି ସଞ୍ଜ,
ମାଧବୀ କୁଞ୍ଜ, ଅଳର ଅଳ ଆଦର ॥୦॥
ଆଜ, କାହିଁକି ରେ ବୁକୁ ଥରେ,
ଆଜ, କାହିଁକି ଏ ଲୁହ ଝରେ,
ହୃତମଣି ଦେଲୁ ତାଙ୍କ ଚିତ୍ତ ମନ ବରେ ବରିବାର ।
ଯେବେ, ଜନମର ଏ କାମନା,
ହଟି, କସନା ଯେନ କା' ମନା ।
ପଲକେ ପଲକେ, ପରଶି ପୁଲକେ ମରିବାର ହେଲେ ଦର ।

---

(୨୩୦)

—ଦାଦରା—

ଜଳେ ଚିତା, ଜଳେ ତନୁ,
ତୁଷ୍ଟି କାହିଁ ଲଭେ ମନୁ ? ||୦||
ପଥରର ଗିରା ମରା,
ସେନେହର ରେଖା ପରା !
ଚିତାନଳ ବଳ ହରା, ଜନମ ସେ ଯେଉଁ ଦିନୁଁ ।୧।
ମର ଘରେ ଅମର ସେ,
ଅଚର ରେ, ସୁଚର ସେ
ନିଶି ଦିନ ଝୁରଇ ସେ—ଅଳିଭା ସେ ନୀଳ ଘନୁ ।୨।
ଆସ ସାଥୀ ! ମନ ଭିତ
ଏ ଦୁନିଆଁ ଛୁର କରି
ମନ କର ମନୁ ଗୋରି—ମରଣଟା ହାରୁ ମାନୁ ।୩।

—————

(୨୩୧)

—କାହାରବା—

କୁସୁମ କଳିକା ଜାଗ,
ତରୁଣ ଅରୁଣ ହେମ-ବରଣ କିରଣ ଗଣ
ରଞ୍ଜେ ପୂରବ ଦିଗ ଭାଗ ||୦||
ଅସ, ବୃନ୍ତ କୋଳ ତଳପ ତେଜି
ଏଇ ଧୂଳି ଧରା ସାରା ଗୁହେଁ ଆଜି
ଆସ ଅଳସ ବିସୋରି ତନୁ ସାଜି
ତବ ନଗଯୁଗ ଅନୁରାଗ ।୧।

ବଢ଼ଅ ବଣେ ବଣେ ରଙ୍ଗ ଫଳାଇ
ବଢ଼ଅ ମନେ ମନେ ଗନ୍ଧ ମିଳାଇ
ବଢ଼ଅ ଦୁନିଆ କାନେ ଶୁଣାଇ
ଶାନ୍ତ ମୈତ୍ରୀ ପ୍ରୀତି ରାଗ ।୨।

ରଖ ଜନମ ଭୂମିର ସମ୍ମାନ
ଦେଖ ନୟନେ ଜଗଜନ ସମାନ
ଲେଖ ଅମ୍ଳାନ ପୋଥିରେ ନିଜ ଦାନ
ଗଢ଼ ମର୍ତ୍ତ୍ୟ ଭୁବନେ ସ୍ୱର୍ଗ ।୩।

---

(୨୩୨)

—ଦାଦରା—

ସାରା ଜୀବନର ଯେତେ ଭୁଲ ମୋର
ନିୟମ କରୁଛି ସବୁକୁ ବଳାଇ କଲି ଯେ ଭୁଲ୍ ଏଥର ॥୦॥

ଭୁଲ୍ ମୋ ଗଣନା
ଭୁଲ୍ ମୋ କଳନା
ଖରାରେ ଦେଖିଲି ତରା,
ଦିନର ସପନେ
ସତ ଗଲି ମନେ
ମରୀଚିକା ଜଳଧାରା
ଧାଇଁ ମଲି ପଛେ ତାର ।
ଏକ ଏକ ଦୁଇ
ଜାଣିଥିଲି ମୁହିଁ
ଭିନ୍ ହେଲା ଏବେ ତାହା,

ଛଳ ଆଖି ଧାରେ
ଛଳ କୁହା ଗିରେ,
ଭଳଗଲ ସତେ ଯାହା,
ଫଳକ ଖେଳିବ ପର ?
ସପନ କଳକା,
ସୋହାଗ ମାଳକା
ଆଜ ନ ଭୁଲଅ ମୋରେ,
ପରଦେଶିଆରେ
ମଧୁ ମାସିଆରେ
ବାନ୍ଧ ତୁ ପୀରତ୍ତି ଡୋରେ
କରୁଚ ଦୂରୁ ଜୁହାର ।୩।

— — —

(୨୩୩)

—ଦ୍ରୁତ-ଏକତାଲୀ—

ଜୀବନ ଫୁଲ ମୋ, ଫୁଟିଛୁ ଅନ୍ଧାରେ
ଥାଅ ଅନ୍ଧାରେ ରଖି,
ଅନ୍ଧାରେ ସୁବାସ ବସ୍ତାରୁ ଥାଉ ସେ
ଅମାରେ ଯାଉ ଟଗୋ ଶୁଖି ।।୦।।

ଗନ୍ଧମା ଯେବେ ଗୋ ହସେ,
ଘୂରି ଘୂରି ଆସେପାଶେ
ଆଶା ମନ ଛୁଇଁ ଆସେ
କୋଟି ଚୁମ୍ବନ ଲେଖି ।୧।

ଦିନକର ସେ ପୀରତି
ଦିନର ସପନ-ସ୍ମୃତି
ଲିଭି ଲିଭି ଆସେ ବର୍ତ୍ତି
ସେ ଯେ ଅନ୍ଧାର-ମୁଖୀ ।୨।

ଅନ୍ଧାର ଯେବେ ସାର
ପଲକ ଆଲୋକ ଧାର,
କହ ତେବେ ବନ୍ଧୁ ! ମୋର,
କି ହେବ ଆଖିରେ ଦେଖି ? ।୩।

———

(୨୩୪)

—ଦାଦରା—

ଯେ ଫୁଲ ଫୁଟିବ ବୋଲି,
ଲତା ତଳେ ଜଳ ଦେଲି,
ମାଧବୀ କୁଞ୍ଜମ ସତି
ଜହ୍ନୁଆଁରେ ଆଖି ମେଲି ।।୦।।

ଛଅଟି ବସନ୍ତ ଆସି
ଛପି ଛକେ ଗଲା ଭାସି,
ନଏ ଜାଣେ ଫୁଲ ହସି
ଛେଟେ ଥିଲା ମନ ଭୁଲି ।୧।

ଆସିଲ୍ଲ ଫୁଟିଲ୍ଲ ବନ
ଆଶା ମୋ ହେଲ୍ଲ ମଳନ,
ସୁମନ ଭାଲେ ଲଖନ
ଦର ଫୁଟା ଯିବ ଝଳ ।୩।

ସାରା ବୁକୁ-ଭରା ବିଷ
ମୁଖେ ମାଖି ମିଛ ହସ,
ସେ ଯେବେ ମନାସେ ନାଶ
ଫଳ ନାହିଁ ମୋର ଭାଲ ।୪।

---

(୨୩୫)

—ଦାଦରା—

ଭୁଠର ପଥର ମୁଁ ଯେ
ଜଦ ମୋର ପାଣି ଶେଜେ,
ଲହରୀ ପହଁର ବାଜେ
ବାହୁଡ଼େ ଆପଣା ଲାଜେ ॥୦॥

ଘର କୋଣ ସୁକୁମାରୀ
ଆସେ କେତେ ଆଶା ଧରି,
ଘଷେ କେଡ଼େ ଥିର ଥିର
ଯେ ପାଦେ ଅଳତା ସଜେ ।୧।

ବନ୍ଧୁର ତନୁ ମୋର
ହୁଏ ସିନା ସମ ତୁଲ
ନଥାଏ ଛଳେ ଖାତର
କୋଟି ପାଦ ଯେବେ ବାଜେ ।୨।

— — —

(୨୩୭)

—କହରବା—

ଦୁଃଖ ସାଥୀ ତୁ ଗୋ ! କବିତା ଏ ଜୀବନର
ତୋ ଠାରୁ ବଳି ତ ଦରଦୀ ନାହିଁ କେ ମୋର ॥୦॥

ସୁଖୀର ସୁଖର ଲେଖା
ସେ ତ ବାଲି-ତଟ ରେଖା,
ସପନ ବନକ ସଖା—ଫୁଲ ଶେଯ ସାଥୀ ତାର ।୧।

ଆଖି ପାଣି ମିଶା କାଳି
ମନ ଲେଖଣୀରେ ବୋଳି,
ସେଇ ଧାଡ଼ି ଦୁଇ ସୃଷ୍ଟି—ଅଲଭ୍ୟ, ଅଭୁଲ ଗାର ।୨।

ଝଡ଼ ଯେବେ ଆସେ ମାଡ଼ି
ଭଙ୍ଗା ସ୍ମୃତି ଯାଏ ଉଡ଼ି
ପୋଛି ଦେଇ କୋଳେ ଭିଡ଼ି—ଦୁଃଖୀ କବି ଲୁହ ଧାର ।୩।

ଦୂରେ ଠେଲ ନାହୁଁ କେବେ
ବାଉଛୁ ମୁଁ ଅନୁଭବେ
ଅବେଳା ଜୁହାର ଲାଗି—ମୁକୁଳା ଦୁଆର ତୋର ।୪।

———

(୨୩୭)

—କହରବା—

ଧ୍ୱଂସ ତୁମେ ଗୋ ! ଜୀବନର ଆବାହନୀ
ଧୂପ-ଗୁଇ ଭଳ ଜଉବୁଠା ଶାନ୍ତି କାନ୍ତ ॥୦॥

ଯେବେ, କର ଡମ୍ବରୁ ବାଜେ
ରୂପ ଧରି ଶମଶାନ୍ ସାଜେ,
ତୁମେ, ଶିବ ତାଣ୍ଡବ ତାଳେ
ରଚ, ପ୍ରଳୟ ମୁଖରେ ବାଣୀ ।୧।

ହସି, ଗଙ୍ଗା ଯମୁନା ଧାର
ମିଶି, ସିନ୍ଧୁରେ ଏକାକାର
ନବ, ସର୍ଜନା ଠାକ ଦଣ୍ଡ
ମାଗେ, ଭିକ୍ଷା ପ୍ରସାର କାନ୍ତ ।୨।

ଯେତେ, ପଙ୍କ ମଳିନ ଶୀର୍ଣ୍ଣ
ଯେତେ, ଦୁର୍ଦ୍ଦିନ ଜର୍ଜ୍ଜୀର୍ଣ୍ଣ—
ସବୁ, ଘୁମାଏ ତୁମର ପାଦେ,
ତୁମେ, ନଅ ରସି କୋଳେ ଟାଣି ।୩।

ଫୁଲ, ମଉଳେ ଫୁଲ ମନାସି
ଲୋକ, ବୋଲେ: – ଭୁଲ ଗଲା ଭାସି
ଭ୍ରମ, ଆଶିଷ ଯେ ଅବିନାଶୀ
ଗାଇ ମୃତ୍ୟୁ ସଞ୍ଜୀବନୀ ।୪।

---

(୨୩୮)

—କହରବା—

ଏତେ ତୋ ନୟନ ବାରି—କାହିଁ ଥିଲା ସତେ ଗୋରି !
ଛଳନା ଏ କି ! କଳନା ନାହିଁ ମୁଁ ପାରିଲି କରି ॥୦॥

ଅବିନେ କି ମନେ ରସି
ବରଜ ମାନ, ତୁ ଆସି
ଦେଲୁ ଯେ ହୁଆ ପରଶି
ପଲକେ ଉଠିଲି ଥରି ।୧।

ନୂଆ ଚ ନୁହେ ଏ ମାନ
ଧୋଇଲା ବାସ ସମାନ
ଓଦା ଶୁଖା ତୋର, ମନ
ଭଲା ଏ ନାଗ୍ନ ଗ୍ଭଭୁଗ୍ନ ।୨।

ତୋତେ ରେ ଅଜାଣ କରି,
ବାରି ମୁଁ ଥାଏଁ, ନ ବାରି
କୁସୁମେ ମଧୁପ ସରି
ଏକା ତୁ ନୋହୁ କାହାରି ।୩।

---

(୨୩୯)

—ଦାଦରା—

ଏକା ଯେ ଘରେ,   ବସନ୍ତ ଫେରେ
ଉଡୁ ଶୁଭେ, କୁହୁ ଡାକେ କୋଇଲି ଦୂରେ   ॥୦॥

ଏଇ ମଲ୍ଲିକା—ପାଖୁଡ଼ାରେ ଲେଖା
ମନ କଥା ମୋର—ମନ-ହୁଆ ଦେଖା,
ଯାଏ ଏଇ ପଥେ, ବନ୍ଧୁଆ ରତନ
ଆଜ ତ କାହିଁ ନ ଫେରେ,
ଗୁନ୍ଥା ହାର ମୋର, ଆଶାରେ ଆଶାରେ
ଏଇ ମଧୁ ସଞ୍ଜେ ଝରେ   ।୧।

କେତେ ସପନର-ମନ ଛୁଆଁ ଛବି
ଉଷା ଜାନ ଚଳେ ଯାଏ ଲଭି ଲଭି
କଥା ଦେଇଥିଲି ଏଇ ଲଗନରେ
ଭେଟ ହେବ ଅଭିସାରେ,
ବୁଝେନା, ମରେ ମୁଁ ଝୁରି ଯାଏରେ, ତାର
ଆଖିରେ କି ନୀର ଭରେ ?   ।୨।

———

(୨୪୦)

—ଦାଦରା—

**କୀଟ** ଅଛି ବୋଲି ନ ବାଛି ତୋଳିଲି
ଲୋଭାଇ କୁସୁମ ଗନ୍ଧ,
ପାହାଡ଼ ଝରଣା ଜାଣି ତ ନଥାଏ
ପଥରେ ପଥର ବନ୍ଧ ॥୦॥

ମୁଖେ ମଧୁ ସ୍ୱର ଧରି
ଅନ୍ତରେ ଗରଳ ଭରି
ଘର ଭଙ୍ଗା ପାଇଁ, ଛପି ଥାଏ ରହି
ଫଟା-ପ୍ରେମ ଅନୁବନ୍ଧ ।୧।

ନ ଜାଣି ସରଳ କୁଆ
ପାଳେ ଭଗାଶର ଛୁଆ
କାଆ ବଦଳରେ କୁହୁ ଶୁଣି, ଛୁଟେ
ସାଇତା ମନ ଆନନ୍ଦ ।୨।

ଛଳନାର ମାୟା-ଜାଲ
ଗଲା ବାଟେ ଖୋଲେ ଖାଲ,
ଚଲା ପଥିକର ମରଣ କୂପ ସେ
ହେଲା ଆଖି ଥାଇ ଅନ୍ଧ ।୩।

— — —

(୨୪୧)

—କହରବା—

ଚାହେଁନା ସେ ଚାନ୍ଦ ମୁଖ,
ଚାହେଁନା ତ ଛଳ ସୁଖ
ଚାହେଁ ଖାଲି ମନ ଟିକ, ମନ ଭିକାରୀ
ମୁଁ, ମନର ଭିକାରୀ ॥୦॥

ଯେ ବସନ୍ତ ଆସେ ଯାଏ
ଯେ ମଳୟ ଲୁଚି ଥାଏ—
ଫୁଲ ଶେଯ ଆସି ଛୁଏଁ—
କରେ ବାସ ଚୋର
ଚାହେଁନା ସେ ମାୟା-ଜାଲ ଛଳନା ଚାତୁରୀ,
ମୁଁ ମନ ଭିକାରୀ ।୧।

ଯା ନୟନେ ଖେଳେ ଜଣେ
ମନ ଦେଖୁଥାଇ ଆନେ
ମୁଖେ ମଧୁ ମାଖି, ଚେଣେ ମାରୁଥାଏ ଛୁରୀ
ଚାହେଁନା ସେ ରୂପ ମୋହ ରହୁଛି ଜୁହାରି,
ମୁଁ ମନ ଭିକାରୀ ।୨।

———

(୨୪୨)

—ଦାଦରା—

ଭୁଲି ନାହିଁ ସେ ସପନ
ଯେବେ, ହସିଆ ଜହ୍ନ ଗୋ, ବାଦଲ ଉହାଡ଼େ
ଲୁହୁଁ ଥିଲା ଚୋରି ଲପନ ॥୦॥

ଝୁରି ଝୁରୁଥିଲା ପିଆସୀ ବଉଳ

ଫୁଲଆ ଆକାଶେ ରଚୁଥିଲା ଖେଳ

ଉଦୁଆଁ ଝଣିର ନଦ-ହ୍ରଦ ଆଖି

ଭ୍ରମର ଧିଆନେ ମଗନ ।୧।

ବାଟ ଭୁଲି ଫେରି ଗଲା ତ ମହୁଆ

ଟେକି ନ ପାରିଲି ମୁଖ,

ଆଖି ଧାରେ ଗଢ଼ା ଯମୁନା ସୁଅରେ

ଭାସିଗଲା ସେତେ ସୁଖ

ଋତୁ ଯାଏ ଆସେ—ଜହ୍ନ ପୁଣି ହସେ

ନ ଫେରିଲା ମଧୁ ଲଗନ ।୨।

---

(୨୪୩)

—ଦାଦରା—

ଝରଣା ଗୋ ! କହ କହ

ଅବୁଝା କି ଗୀତ ଗାଅ ॥୦॥

ଭାଷାରେ କି ଆକୁଳତା

ସେ କି ବୁଝୁ ଉର ବ୍ୟଥା

ନବ ଦୁଇ ପ୍ରିୟ ମିଳନ ଆଶାରେ

ବନ ଋତୁ କି ଗୋ ଧାଅଁ ? ।୧।

ଯଉବନ ଗରବିଣୀ

ଅବାଟ ବାଟ ନ ମାନ,

ଶଇଳ କୁମାରୀ ମହତ ଏଡ଼ି ତ,

କାହ୍ନ ଭେଟିଁ, କୂଳ ଖାଅ ।୨।

ପଣ୍ଟଣବା କଥା ମୋର :—
କା' ଲାଗି କଏ ଆତୁର
ସାଗର ତୁମକୁ ଡାକ ଦଏ କ ନା,
ସ୍ଥଏଁ ତୁମେ ଧସ୍ ଦଅ ? ।୩।

ଭୁଲି ନଜ ଗଉରବ
ଅବଲା କୂଳ ଗରବ
ପୁରୁଷର କୋଳେ ଝରଣା ଲୋ ! ଛି ଛି,
ହସଇ ବସିଲୁ ଦେହ ।୪।

— — —

(୨୪୪)

—ନିଭାଳି—

ବାଦଲ, ଘାନ ଜନ ସାଥୀ,
କହକୁ ଦସ୍ଥିତ କାନେ, ଗୁରୁ ଘନ ଗରଜନେ
ତା ଲାଗି ଅସସ୍ ଘନ ସ୍ଥାନ୍ତ ।।
ଦାମିନୀ କାମିନୀ କମ ଭୂରୁ ଭଙ୍ଗିମା
ଖେଳେ ଘନ କୋଳେ ରସ ରଙ୍ଗେ
ଥର ଥର ତନୁ ମୋର କାମ ଶରେ ଜର ଜର
ନୟନରେ ଭରେ ନୀର, ବଚଳତ ଅତନୁ ବଭଙ୍ଗେ,
ମକମକ ଡାହୁକ ଧୈବତ କହେ ଭେକ
ଦୁରୁ ଦୁରୁ କମ୍ପିତ ସ୍ଥାନ୍ତ,
ନବଘନ ! ହର ମନ ଚାନ୍ତ ।।

— — —

(୨୪୫)

—ଏକତାଲୀ (ଦ୍ରୁତ)—

ଦେଖିଛ କି ବନ୍ଧୁ ସେଇ ଏକା ମେଘେ
ଦୁଇ ଚନ୍ଦ୍ର କାହିଁ ଫୁଟେ,
ଦେଖିଛକି ବନ୍ଧୁ ସେଇ ଏକା ଫୁଲେ
ଦ୍ୱିଭଳ ବାସନା ଛୁଟେ ? ॥୦॥

ପାହାଡ଼ ପେଟ ଫଟାଇ
ଝରଟିଏ ଆସେ ବହି
ଗରବେ ଉଛୁଳ, ତାର ଧାରେ ଝର
ଗରଭିଟି ଯିବାକାଟେ ।
କଏ ଶୁଖେ, କଏ ଫୁଲେ
ତାଲ ତରେ କାହା କୂଳେ,
ଦୁଇଟି ଭଅଁର ବସିଲେ, ରସିଲେ
ଫୁଲର କରମ ଫାଟେ ॥

— — —

(୨୪୬)

—ଦାଦରା—

ହେଲେ ଜଳ ଶଶୀ ମୁଁ, ତୁ ବୃନ୍ଦମା
ମୁଁ ଯେ ଆକାଶ ତାରା, ତୁ ମାଳତୀ,
ମୁଁ ଗୋ ମଧୁ ମାଗୀ ଭଧୂ ଯାମିନୀ
ବାସ ରସିଆ ତୁ କୁସୁମ କାମିନୀ ॥୦॥

ଯେବେ, ବଉଳ ଆସେ ଗୋ ଫୁଲି
ହେଲେ ସଖୀ ମୁଁ କଳା କୋଇଲି
ତୁ ଯେ 'କୁହୁ', ବାଣୀ ନବ-ରଙ୍ଗିମା ।୧।

ହେଲେ ଘୁମ-ଘୋର ଏ ମୋ ନୟନ
ତୁ ଯେ ନିଦ-ହରା ସ୍ୱୈର ସପନ
ଛଇ ନାଚେ ତୋର ଭ୍ରୂରୁ ଭଙ୍ଗିମା ।୨।

ଯେବେ କୁଞ୍ଜବନର ମୁଁ ଚଳପ
ତୁ ଯେ ବ୍ରଜ ମଲ୍ଲୀ ଫୁଟା ଅଳପ
ମୁଁ ଯେ କାୟା, ତୁ ମୋ ଛାୟା ସଙ୍ଗିମା ।୩।

— — —

(୨୪୭)

— ଏକତାଳୀ —

ବାରିଦ ! ବାରିଦେ ମନ ନ୍ତୁ ଭାରି
ସାହା କେ ନାହିଁ ତୋ ବିନାରେ ॥୦॥

ବାରି ବରଷାଇ ତୁ ଚାତକ ରସାଅ
ଅପରାଧ କି ମୋର ସାଗରେ ଭସାଅ
ବାଧୁରେ ମୁଁ ଝୁରେ—ନଶି ନାହିଁ ସରେ
ବାଧୁରେ ମୁଁ ପରା ତୋରେ ଅନୁସରେ
କହ କାନେ ତାର ଏ ମୋ ବେଦନା ରେ ।୧।

ଘର ଝରେ ନୟନୁ ତା ପଥ ଚାହିଁ ଚାହିଁ,
ନଈମାଝି ମୁଁ ଘନ ! ଭରସା କେହି ନାହିଁ
ନୀରଦ ରେ, ମୋର ତୁହି ଏକା ସାକ୍ଷୀ
ନିଦ କି ସପନ, ନ ଜାଣେ ମୋ ଆଖି
ତା ବିନାରେ ଜୀବ ସହିଲା ସିନା ରେ ।୨।

———

(୨୪୮)

— ଦାଦରା —

ଯେବେ ଚାନ୍ଦ ହଏ ହସି,
ଫୁଲ ମନଟି ସାରା ଖୁସି ।।୦।।

ଚୈତର ମଳୟ କାହିଁ ଥାଏ
ସତେ ବୁକୁ ଚହଲି ଯାଏ
ଲତା ଶେଯରୁ ଲୁଚି ଚାହେଁ
ତାର ମନର କଥା କହେ
ସାଧେ ଭଗାଣ ଦାଉ ଆସି ।୧।

ଚଲା ବାଦଲ ଚେଇଁ ମେଘେ
ଚାନ୍ଦ ପଛରେ ଧାଇଁ ବେଗେ
ଟାଣି ଓଢ଼ଣା ଅନୁରାଗେ
ନିଏ କୋଳାଇ କି ସରାଗେ
ସେ ଯେ ନାଗର ପରଦେଶୀ ।୨

ଏଇ ଆଲୁଅ-ଛାଇ ତଳେ
ମନ ପୀରତି-ଦୋଳ ଖେଳେ
ଧୀଠ ଭଅଁର ଫୁଲ ମେଳେ
ରଚ କପଟ ଛଳେ ବଳେ
ଯାଏ ଦଗା ଲଗାଇ ଖସି ।୩।

———

(୨୪୯)

—ଦାଦରା—

ବାଉଳା କଲ ଟଗୋ,
ଯଦି ବା ଜୀବନେ ନ ଛୁଇଁଲ ତୋରେ ଅଳି,
ସାଇତା ଯେତେକ ଗନ୍ଧ ଦସରା ପବନରେ ଦଅ ମେଲି ॥୦॥

ଯେ ପଥେ ବନ୍ଧୁଆ
ଆସେ ଯାଏ ବାର ବାର,
ରେଣୁ ଭୁଲେ ମିଶି
ଚରଣ ପରଶୁ ତାର,
ଆଶାର ଆଶାୟୀ ମନ ଭୁଲି ସବୁ ଅଭିମାନ
ହେଉ ପୀରତିର ବଳି ।୧।

ଭୁଲି ପଥୁକା ସେ—ଶତଦଳରେ ତାର ଘର
ନିଶୀଥ ସ୍ୱପନେ - ଆସେ, ହେଲେ ଅନ୍ଧାର
ହେବ ସେ ସପନ ସାଥୀ
ଜାଳି ତୁ ଚନ୍ଦ୍ରାବତୀ,

ଜଗି ବସ, ଜାଗି ରଜନୀ, ଦୁଆରୁ ଫେରଯିବ କାଳେ ଭୃଲ,
ମଣାଇ ନେବୁ ତା ପାଶୋରୀ ଚରଣ
ପୋଛୁ ମଳନତା ଧୂଳ ।୬।

— — —

(୨୫୦)

—ଦ୍ରୁତ-ଏକତାଳୀ—

ଲେଖନାହିଁ କବ ମୂର୍ତ୍ତି ଲେଖଣୀ ଧାରେ
ଦେଖନାହିଁ ରୂପ ମନ ନୟନ ଯା ଦ୍ୱାରେ ॥୦॥
ଅଜର ନୁହେଁ ସେ କବ !
ଅମର ନୁହେ ସେ ଛବ,
ମୂର୍ତ୍ତିରୁ ବଳ ସୁନ୍ଦର ଯାହା—'ସ୍ମୃତି' ନାମ ସେ ଯେ ଧରେ
ମୂର୍ତ୍ତି ପାସୋର, ସ୍ମୃତିର-ଜାଗର, ଜାଳ ରଖ ବୁକୁ ପରେ ।୧।

ସ୍ମୃତି ସମ୍ବଳ ଛବ
ଅମୂଲ ସେ ବଇଭବ,
ସ୍ୱତ ନିଦ ହର, ଚିର ମୀର-ଝର ଆଖି ତଳେ ଥରେ ଥରେ;
ଯଦବା ପଲକେ, ଆସିସେ ଝଲକେ, ଜୀବନ ସେ ମରଣରେ ।୨।

କାଲ ରଖି ପଟ୍ଟପଟେ
ବଣ୍ଣ ଗୁଳେ ନା ବାଟେ
ବାଟ ଫେର କର, ପଥିକାରେ ତୁ ଯେ ବସାଇ ପାସୋର ଘରେ
ଗତ ମଧୁ ଧାର ଚଖାଇ ରସାଇ ସ୍ମୃତି ଗୋ ! ଚେଣୁ ଜହ୍ନାରେ ।୩।

———